# ସରଗ ଛୁଇଁବ ମରତ ମାଟି

ଶ୍ରୀ ନରସିଂହ ମିଶ୍ର ଏମ୍, ଏ, ବି. ଇଡ୍.

ପ୍ରୌଢ଼ ଶିକ୍ଷା ବିଭାଗ
ଓଡ଼ିଶା ସରକାର

# ପଦ୍ଏ କଥା

ଶିକ୍ଷା ନିର୍ଦ୍ଦେଶାଳୟର ପ୍ରୌଢ଼ଶିକ୍ଷା ସଂସ୍ଥା ଆନୁକୂଲ୍ୟରେ ଏହି ପୁସ୍ତିକାଟି ପ୍ରକାଶ କରାଗଲା । ରାଜ୍ୟର ପ୍ରତ୍ୟେକ ସାକ୍ଷରତା କେନ୍ଦ୍ରରୁ ପ୍ରତିବର୍ଷ ଉନ୍ନୀତ ହେଉଥିବା ବୟସ୍କ ସାକ୍ଷରମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ।

ଏଥିରେ ସନ୍ନିବେଶିତ ଦୁଇଟି ଗଳ୍ପ ମଧ୍ୟରେ ନାରୀ ଶିକ୍ଷାର ପ୍ରସାର ଦିଗରେ ଆଲୋକପାତ କରାଯାଇଛି । ନିରକ୍ଷର ସ୍ତ୍ରୀ କିପରି ସାମାଜିକ କୁସଂସ୍କାର ମଧ୍ୟରେ ପ୍ରପୀଡ଼ିତା ଏବଂ ଶିକ୍ଷାଲାଭ କରିବାପରେ କିପରି ତା'ର ଦୁଃଖ ଦୁର୍ଦ୍ଦଶା ମୋଚନ ହୋଇ ପାରୁଛି, ତାର ଏକ ଚିତ୍ର ଏହା ମଧ୍ୟରେ ଉପସ୍ଥାପନ କରାଯାଇଛି ।

ଆଜିର ଜାତୀୟ ଜୀବନସ୍ରୋତ ସାମାଜିକ କୁସଂସ୍କାର ଯୋଗୁ ରୁଦ୍ଧପ୍ରାୟ । ନିରକ୍ଷର ନାରୀ ବହୁ ଅନ୍ଧବିଶ୍ୱାସ ତଥା ମାନସିକ ସଂକୀର୍ଣ୍ଣତା ମଧ୍ୟରେ ଏପରି ଭାବରେ ଜଡ଼ିତ ଯେ, ସେ ନିଜର ଜୀବନକୁ ବିପନ୍ନ କରିବା ସହିତ ସାମାଜିକ ଜୀବନକୁ ମଧ୍ୟ ସଙ୍କଟାପନ୍ନ କରେ । ଜ୍ଞାନ ଦାନ ବ୍ୟତୀତ, ଶିକ୍ଷା ମଣିଷର ରୁଚି, ଚଳଣି, ଅଭ୍ୟାସ ତଥା ବ୍ୟବହାରରେ ପରିବର୍ତ୍ତନ ପାଇଁ ସୁଯୋଗ ସୃଷ୍ଟି କରିଥାଏ । ଏହି ଦୃଷ୍ଟିରୁ ନାରୀ ଶିକ୍ଷାର ବ୍ୟାପକ ପ୍ରସାର ନିମିତ୍ତ, ପ୍ରୌଢ଼ଶିକ୍ଷା ସଂସ୍ଥା ତରଫରୁ ଏହା ଏକ ପ୍ରାରମ୍ଭିକ ପଦକ୍ଷେପ । ଚଳିତ ଆନ୍ତର୍ଜାତିକ ମହିଳାବର୍ଷ ଅବସରରେ ଏହି ପ୍ରକାଶନ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ, ଏହା ଆମର ବିଶ୍ୱାସ ।

ପ୍ରକାଶକ ।

# ସୂଚୀ

# ସରଗ ଛୁଇଁବ ମରତ ମାଟି

ଗାଁ ସାରା ସାଇ ମାଇପିଙ୍କ ହୁଳହୁଳରେ ଉଚ୍ଛୁଳି ଉଠୁଛି । ପିଲାଠୁ ବୁଢ଼ାଯାଏ — ସମସ୍ତେ ଉତାଲ୍ । ଯେତେ ଯିମିତି ନରଣଉଡ଼ର ଆଜି ଜନମ ଦିନ । ମାଟି ପୃଥ୍ୱୀ ବିଧାତା ସରଜନା କଲା ଦିନଠୁ, ଏ ଗାଁରେ ଏଡ଼େ ଉଛବ ହୋଇ ନ ଥିଲା ।

"କିରେ କଥା କଣ ?"

"ଏ ଉଛବ କାହିଁକି ?"

"ଏତେ ଯାକଯମକ କୋଉଥିପାଇଁ ?"

ଯାହାକୁ ପଗ୍ଚରିଲେ ସଭିଏ କହନ୍ତି, "ତମେ ସେଥିରୁ କଣ ପାଇବ । ତେବେ ସରପଞ୍ଚ କହୁଥିଲେ—ଉଛବ ଅଛବ ପାଇଁ ।"

"କିରେ, କୋଉ ଅଛବ ? "

"ଓହୋ, ସେଥିରୁ କ'ଣ ପାଇବ । ଉଛବ ତ ଅଛବ ପାଇଁ । ଆଜିପରା କେତେ ମୁଲକର ବଡ଼ ବଡ଼ ବାବୁ ସବୁ ଆସିବେ । ସେମାନେ ବୁଝାଇବେ ଅଛବ କଣ । ହେଲା, ଯେତେବେଳେ ଜାଣିବନି । ଏବେଠୁ ଏଡ଼େ ତରବରା କଆଁ ?"

"ଯା'......ମ ! ଅଛବ ମାନେ ତ ଅକୁଆଁ । ସେ ଆଉ ଅଧିକ ବୁଝାଇବେ କ'ଣ ? କଥାଟା କଣ ବୁଝା ପଡ଼ୁନି ? "

"ହଁ, ବୁଝାପଡୁଛି ଯେ, ଏଇ ଅରଥ ବୁଝାଇବାକୁ କଣ ଏଡ଼େ ଏଡ଼େ ବାବୁ ଆସୁଛନ୍ତି ? ଏତେ ବଡ଼ ଉଛବ ଗାଁରେ ହଉଚି ? ତା'ଭିତରେ ଅସଲ ମରମ କିଛି ଅଛି ।"

କଥାବାର୍ତ୍ତା ଭିତରେ ଦୁଇ ଜଣ ଗାଁଲୋକ ପୁଣି ସେଇ ଜନସମୁଦ୍ର ଭିତରେ ନିଜକୁ ହଜାଇ ଦେଲେ ।

ଗାଁ ମୁଣ୍ଡକୁ ଘରଟିଏ । ଝାଟି ମାଟିର । ପାଣି ମାଡଖାଇ ବାହାର ପାଖର କାନ୍ଥ କଟି କଟି ଖସି ପଡ଼ିଲାଣି । ମାଉଁସ ଭିତରୁ ହାଡ ବାହାରିଲା ପରି, ଝାଟିଗୁଡ଼ାକ ଠାଏ ଠାଏ ବାହାରକୁ ବାହାରିଛି । ତା'ର ଭିତରେ ଗୋଟିଏ ଛୋଟିଆ ସଂସାର । ପୁନିଅଁ ଯାଇଛି— ଉଆଁସ ଉକୁଟି ଆସୁଛି । ବୁଢ଼ାବୁଢ଼ୀଙ୍କର ଦାନକାଳ ସରିବା ଉପରେ । ଘରେ ଛୁଆ ପିଲାଙ୍କର କୋଳାହଳ ନାହିଁ, ହସ ଖୁସି ନାହିଁ । ଘରଟା ଖାଁ ଖାଁ ଗୋଡ଼ାଉଛି । ବୁଢ଼ା ଭାଇଗର ଥିଲା ଗୋଟିଏ ବୋଲି ଝିଅ । ନାଁଟି ତାର ଚନ୍ଦ୍ରିକା, ଡାକ ନାମ ଚନ୍ଦର । ଦୁଇ ବରଷ ହେଲା ଶାଶୁ ଘରକୁ ଗଲାଣି । ନାଁଟି ଯିମିତି, ରୂପଟି ବି ସିମିତି । ଗବ୍ ଉଜଳ ଡାଉଳ । ମୁହଁଟି ଯତେ ଅବା ପୁନିଅଁ ଚନ୍ଦକୁ ଛି' କରୁଚି । ଦାନ୍ତଟି ସୋରିଷ ଫୁଲିଆ ଗୋରି । କଥା ପଦକ ଲବଣିଠୁ ଆଉରି କଅଁଳ । ଚାଲିଲେ ଲକ୍ଷ୍ମୀଙ୍କ ବାହନ ହଂସର ବି ହଂଧା ଉଡ଼ିଯାଏ । ଯତେ ଅବା ରଙ୍କର ପଙ୍କ ଜୀବନରେ ପଦୁଅଁ ଫୁଲ ।

ଭାଗ୍ୟର ଭାଗ୍ୟ ବଡ଼ ଟାଣ । ଖୋଜା ନାହିଁ, ଲୋଡ଼ା ନାହିଁ ମନଲାଖି ଜୁଆଇଁ ପିଲାଟିଏ ପାଇଛି । ଗାଁର ମାଟିଗୁଳ ଚାହାଳୀରୁ ଉପର ଇସ୍କୁଲକୁ ଯାଇଚି । ସହରର କୋଠାଘର ଇସ୍କୁଲରେ ଚାରି କଲାସ ଛୁଇଁଚି । ଜମିବାଡ଼ି ବିଶେଷ ନ ଥିଲେବି ପଢ଼ା ତ ଅଛି । ଭାଇଗର କପାଳ ଟାଣ । ଗାଁର ଆଉ ଆଉ ଲୋକେ ଟିକିଏ ଆଡ଼ ଆଖିରେ ତାକୁ ଦେଖନ୍ତି । ଭାଇଗର ସେଥିକି ଖାତିର ନ ଥାଏ । ସେ ଭାବେ ଭଗବାନ ନ ଚାହିଁଲେ, ମଣିଷ ମଣିଷର କଛି କରି ପାରିବ ନାହିଁ ।

ଗାଁ ଚାହାଳୀର ମାଷ୍ଟ୍ରେ ଭାଇଗକୁ କେତେ କହିଲେ । ଚନ୍ଦର ପାଠ ପଢ଼ିବ, ପୁରାଣ ଭାଗବତ ଗାଇବ, କୋଇଲିପରି, କୋଇଲି ପଢ଼ିବ । ହାକ ଲାଭରେ ଚିଠି ପତର ଲେଖିବ । କଥାଟା ବୁଢ଼ା ମନକୁ ପାଇଲେବି ବୁଢ଼ୀ ମନକୁ ପାଇଲାନି । ସେ ମାରଣା ଗାଈ ପରି ବାହାରିଆସି ଅବଧାନଙ୍କ ସାତପୁରୁଷ ଗାଳି ପକାଇଲା ।

"ହଇହୋ, କ'ଣ କହୁଛ ? ଝିଅ ମୋର ପାଠ ପଢ଼ିବ ? ଅଣ୍ଡିରା ଚଣ୍ଡି ହବ ? ଆମେ ପାଠ ପଢ଼ିନୁ ବୋଲି ଘରଦୁଆର କଣ ଚଳଉନୁ ? ହଇ ହୋ କରଣ ଘରର ଝିଅ—ସେ ପୁଣି ଦାଣ୍ଡକୁ ଯିବ ! ଭଲା······କଉଛୁଣା ପାଠ କୋଉଠୁ ଆସିଲା । ବାହ୍ମଣ କରଣ କୁଳକୁ ବୁଡାଇଲା । ଏ ସରକାରଘର କ'ଣ ନ କଲା । ଝିଅଗୁଡ଼ାକ ପାଠ ପଢ଼ିବେ, ଦାଣ୍ଡ ହାଟରେ ମୁଣ୍ଡ ଟେକି ଚାଲିବେ । କାଳ ସମ୍ବନ୍ଧ—କାଳ ସ···ମ୍ବ···ନ୍ଧ···ନ ।" ମାଷ୍ଟ୍ରେ ହତାଶ ହୋଇ ଫେରି ଯାଇଥିଲେ । ଥରେ ନୁହେ, ପାଞ୍ଚ ପାଞ୍ଚ ଥର ।

ଚନ୍ଦରର ଶାଶୁଘର 'ଶରଧାପୁର । ବେଶି ବାଟ ନୁହେଁ । ସେ ଗାଁର ଝରଣା ସୁଅରେ, ପିଲାଏ ପହଁରି ପହଁରି ଚାଲି ଆସିଲେ, ଏ ଗାଁର କୂଳରେ ଲାଗି ଯାଆନ୍ତି । ଚନ୍ଦର ଏଇ ଝରଣାରେ ନିତନିତି ଗାଧୁଏ । ଭାବେ, ଯୁଆର ସୁଅତ ମୋ ଦେହ ଛୁଇଁ ଆମ ଗାଁ ବାଟ ଦେଇ ବହିଯାଉଛି, ମା ମୋର ତଳ ଘାଟରେ ଗାଧୋଉଥିବ, ତାକୁ ବି ଛୁଇଁବ । ସେ ପାଣି ଭିତରେ ମୁହଁ ବୁଡାଇ, ସୁଅ କାନରେ କେତେ ଅକୁହା କଥା ମନ ଖୋଲି କହେ । ମନ ଗହନର ମରମ କଥା । ତା ମା'କୁ କହିବ ।

ଚନ୍ଦର, ଶାଶୁଘରର ଲେଖାପୋଖା ନଣନ୍ଦମାନଙ୍କ ହାତରେ ଚିଠି ଲେଖାଏ । ମିଠା ମିଠା କଥାରେ ସଭିଙ୍କ ମନ କିଣେ । ନିଜ ଗାଁର ଦହିବାଲି, କେଉଟୁଣୀ, କୁମ୍ଭାରୁଣୀ ପସରା ନେଇ ଆସିଲେ, ଅତି ସତର୍କରେ କିନିଷ କିଣେ । ଘରଆଡକୁ ଲୁହିଁଲୁହିଁ ଲୁଚି କରି ଚିଠିଟି ବଢ଼େଇଦିଏ—ମା'କୁ ଦେବାକୁ । ସେମାନେ ଗାଁ ଝିଅର ମିନତି ରଖନ୍ତି ।

ଚିଠି ଯାଇ ଠିକ୍ ବେଳରେ ପହଞ୍ଚେ ବୁଢ଼ୀ ପାଖରେ । ଲସର ପସର ହୋଇ ଦଉଡ଼େ ଗାଁ ଚାଟଶାଳାକୁ । ସେଇ ବୁଢ଼ା ଅବଧାନଙ୍କ ଉପରେ ତା'ର ଭାରି ବିଶ୍ୱାସ । ଗାଁର ଆଉ କେହି ପେଟରେ କଥା ରଖିବେନି । ଝିଅର ଶାଶୁଘର କଥା । କେଡ଼େ ଗହନ । ଟିକିଏ ପଦାକୁ ବାହାରିଲେ ଝିଅ କେଡେ ହିନସ୍ତା ହେବ ।

ଅବଧାନେ ଚନ୍ଦର ମା ପାଖରେ ଲୁନଲୁନ ଚିଠିଟି ପଢ଼ି ଦିଅନ୍ତି । କେହି ଶୁଣି ପାରନ୍ତିନି । ହେଲେ ଚାଟଶାଳାର ସାମନା କେନ୍ଦୁଗଛରୁ ଗୁଣ୍ଡୁଚି

ମୂଷାଟାଏ ଓହ୍ଲାଇ ଆସି ସବୁ ଶୁଣୁଥାଏ । ଚଟିପଡ଼ା ସରିଲେ, ଲଙ୍ଗୁଡ଼ି ପିଟି ଚଁ ଚଁ କରି ଚହଳ୍ଡ଼ାଳକୁ ଉଠିଯାଏ । ସତେ ଅବା କହେ, "ଚନ୍ଦର ମା'ଲେ, ଚନ୍ଦର ମା ! ସବୁ ଶୁଣିଲି ଲେ, ସବୁ ଶୁଣିଲି । ତୋ କଳାହାଣ୍ଡି ସମୁଦୁଣୀକୁ ସବୁ କହିଦେବି ।"

ବୁଢ଼ୀ ଗୁଣ୍ଡୁଚି ମୂଷା ଉପରେ ହସି ହସିକା ଗାଳି ବରଷି ଦେଇ ବାଡ଼ି ଧରି ଆଗେଇଯାଏ । "ମଲ୍ ମୋର, ଏ ମୂଷା ପଲ, କ'ଣ ହୋଇ ମରୁଚନ୍ତି ମ । ବିଧାତା ସହିବନି ।"

ମାଷ୍ଟ୍ରେ ବନେବନେ ପଛକଥା ଚନ୍ଦର ମାକୁ ମନେପକାଇ ଦିଅନ୍ତି । "ବୁଝିଲ ମାଉସି, ସବୁକାଳ ସମାନ ଯାଏ ନି । ତମ ବାହକ ଇମିତି ସିମିତି ହୋଇ ଚାଲିଗଲା । ଆଜି ଆସିଚି ନୂଆ ଯୁଗ, ନୂଆ ମଣିଷ, ନୂଆ ନୂଆ କଥା । ନୂଆ ସାଥିରେ ପୁରୁଣାକୁ ମିଶାଇ ନ ଦେଲେ ଲୋକେ ଖାଲି ଘୃଣା କରିବେ । ଦେଖିଲ ପାଠୁଆବାବୁମାନଙ୍କର ଅପାଠୁଆମାନଙ୍କ ଉପରେ କେଡ଼େ ଘୃଣା । ସତେ ଯେମିତି ଅଛୁଆଁ ଲୋକ । ଯାହା କୁହ ମାଉସି, ତମେ ଯଦି ସେତେବେଳେ ମୋତେ ଗାଳି ଗୁଲଜ ଦେଇ ନ ଥାନ୍ତ, ତା' ହେଲେ ଚନ୍ଦର ନିଶ୍ଚୟ ପାଠ ପଢ଼ିଥାନ୍ତା ।"

"ହଁ, ସତ କହିଲ ଅବଧାନେ । ଘର ନିଆଁ କଣ ଅଣ୍ଟିରେ ପୂରାଇବ ? ମାଇକିନା ଜନମ । ବଡ଼ ଅବୁଝା ଜାତି ।"

"ମାଉସି, ଗାଁର ଏତେ ଝିଅ ପାଠ ପଢ଼ିଲେ । ବାହାସାହା ହୋଇ ଶାଶୁଘରକୁ ଗଲେଣି । ସବୁ କ'ଣ ଅଣ୍ଡିରା ଚଣ୍ଡି ହୋଇଗଲେ ? କହିଲ, ଆମ ଗାଁ ।ଟା ଯାକର ଯେତେ ଝିଅ ଗଲେଣି କେତେ ଜଣ ବୋଲଣା ଆଣିଚନ୍ତି ? କେତେଟା ଅଣ୍ଡିରାଚଣ୍ଡି ହୋଇଗଲେ ? ମୁଁ ତ ସେମାନଙ୍କୁ ଏଇ ହାତରେ ମଣିଷ କରି ଛାଡ଼ିଚି । ଚନ୍ଦର ପାଠ ପଢ଼ିଥିଲେ, ତା' ନିଜ ହାତରେ, ମନର ଗହ୍ୱରିଆ କଥା ଖୋଲି ଚଠି ଲେଖିଥାନ୍ତା । ତମେ ବି ଦି' ଅକ୍ଷର ପଢ଼ିଥିଲେ ମନକୁ ମନ ପଢିଥାନ୍ତ ।"

"ହଁ ଗୋ ନାହାକ ପୁଅ । ତମେ ଗାଁରେ ନ ଥିଲେ ମୁଁ କି ହରବର ହେଉ ନ ଥାନ୍ତି । ଚିଠିଦିଅନ୍ତି ପଛକେ, ଚଠି କ'ଣ ଆଉ କାହାକୁ ଦେଖାନ୍ତି ?

ସେତେବେଳେ ତମର କୁହାକଥା ଶୁଣିଲିନି । ଦଣ୍ଡେଘଣ୍ଟା ପଢ଼ିଥିଲେ ଭଲ ହୋଇଥାନ୍ତା । ହେଲେ ଦିନ ତ ଗଡ଼ିଗଲାଣି । ଆଉ ଭାବି ଲାଭ କଣ ?"

"କ'ଣ କହିଲ ମାଉସି, ଦିନ ଗଲାଗଲା । ପାଠ ପାଇଁ କ'ଣ ଦିନ ଅଦିନ—ଯାନବଢ଼ ! ଏଇଟା ପରା ନିତିଦିନିଆ ଫସଲ ପରି । ମାଟିରେ ମଞ୍ଜି ପୋତି ପାଣି ଢାଳିଲେ ଯିମିତି ବସୁଧା ମାତାର ବୁକୁ ଚହଲାଇ ଗଛଲତା ଉଲୁସି ଉଠେ, ସିମିତି ମନ ମାଟିରେ ପାଠର ମଞ୍ଜି ପୋତି ଖାଲି ଟିକଏ ଟିକଏ ଶରଧାର ଜଳ ଢାଳିଲେ, ପାଠ ପରା ଲେଉଟଣି ଲତା ପରି ମାଡ଼ିଯିବ । ଆମ ଓଡ଼ିଆ ଅକ୍ଷର ଗୁଡ଼ାକ ଏତେ ବଢ଼ିଆ, ଏତେ ସୁନ୍ଦର ଓ ଏତେ ସହଜ ଯେ ତିନି ଦିନରେ ଅକ୍ଷର ଶିକ୍ଷା, ତିନି ହପ୍ତାରେ ନାଁ ଲେଖା ଆଉ ତିନି ମାସରେ ଚିଠି ଲେଖା, ବହି ପଢ଼ା, ପୁରାଣ ଗୀତ ଓ ଭାଗବତ ପାରଣା । ବୁଝିଲ ମାଉସୀ, ତିନିମାସିଆ ଡାଲୁଅ ଧାନର ଅମଳ ପରି । ବୁଣିଲା ଆଗରୁ, ଯାଗଯୋଗ ଦେଖି ଭଲ କରି ପଡ଼ିଆକୁ ହଳ କରିବା କଥା । ବୁଣି ଦେଲାଠୁ ଆଉ ଭାବିବାର କିଛି ନାହିଁ । ଅପାଠୁଆର ମନ ପଡ଼ିଆକୁ ସିମିତି ଟିକଏ କଷ୍ଟ ସହି ଚଷିଦେଲେ ହେଲା ।"

"ହେଲେ ନାହାକ ପୁଅ, ମୁଁ ତମକୁ ଗାଳି ପଦିଏ ନ ଦେଲେ ମନର ସାଧ ମେଣ୍ଟିବନି । ସେତେବେଳେ କଣ ଜାଉରେ ତମର ଶିକୁଳିଆ ହୋଇଥିଲି । ଆଜି ଏତେ ବଢ଼ିଆ କଥା କହି ମୋ ମନକୁ ଚହଲେଇ ଦେଉଚ । ସେତିକବେଳେ ସିମିତି ଟିକଏ ମନକୁ ବୁଝାଇ ଦେଇଥିଲେ ଝିଅ ମୋର କଣ ମୂରୁଖ ହୋଇଥାନ୍ତା ?"

"ମାଉସି ! ଆଜି ବି ଦିନ ଯାଇନି !"

"ଗାଁ ଗାଁକେ ନାରୀ ମଙ୍ଗଳ ସମିତି ଖୋଲିଛି । ଅପାଠୋଈ ଝିଅ, ବୋହୂ, ବୁଢ଼ୀ ସମସ୍ତେ ପାଠ ପଢ଼ିବାର ସୁଯୋଗ ଅଛି । ତା ଛଡ଼ା ଆହୁରି କେତେ କେତେ ନୂଆ ଧନ୍ଦା ମଧ୍ୟ ଶିଖି ପାରିବେ । କଉ, ଆଜି ପରା ସେଇଥି ପାଇଁ ଏତେ ଉଛବ । ବଡ଼ ବଡ଼ ବାବୁ ଆସିବେ । ସଭା ହବ । ଗୋଟିଏ ରାତି ଇସ୍କୁଲ ଖୋଲିବ । ବୁଢ଼ାହାଡ଼ା ଟୋକା ଛେଣ୍ଡିଆ ସମସ୍ତେ ପଢ଼ିବେ । ମୁଁ ତ ତମକୁ ନେଇ ଆଗ ସ୍କୁଲରେ ବସେଇ ଦେବି । ମାସକ ଭିତରେ ସନ୍ଦ

ଚନ୍ଦର ପାଖକୁ ଶଠି ଲେଖି ନ ପାରବ, ତେବେ ନାହାକ ପୁଅର ନାଁ ଧରବନ !”

ଚନ୍ଦର ମା ହସିହସି ବେଦମ୍ । ଇମିତ ମନ ଖୋଲି ହସ ତା ବାହା ବାହାକେ ହସି ନ ଥିଲା। ହସିଲି ମୁହଁକୁ ଟୁଙ୍ଗାଡ଼ ଦେଇ କହିଲା, “ଅବଧାନେ !

ପାଚଲି ବାଳରେ ପାଠ
ଛଅ ଦୁଗୁଣେ ଆଠ ?”

ହଠାତ୍ ଆଉ ଗୋଟାଏ ଚଉକପିଆ ଚାଳଦଆ ହସ ଅବଧାନଙ୍କ ମୁହଁରୁ ବାହାର ଆସିଲା ।

“ବିଲକୁଲ୍ ଠିକ୍ ।

ବିଲକୁଲ୍ ଠିକ୍ ।

ହେଲେ ମାଉସୀ, ପାଠ ତ ହୋଇଗଲା । ଟିକଏ ବାଗେଇଦେଲେ ହେଲା ।

ପାଚଲି ବାଳରେ ପାଠ
ଛ’ ଦୁଇ ମିଶି ଆଠ ।”

ସନ୍ଧ୍ୟା ହେଲା ।

ଘଣ୍ଟିବଜା ଲଗିଲା· · ·ଗାଈଗୋରୁ ଗୋଠରୁ ଆସିଲେ ।

ଗାଁ ଦାଣ୍ଡ କଳ ଗାଉଣାରେ ଉଛୁଳ ଉଠିଲାଣି । ବାବୁମାନେ ପହଞ୍ଚ ଗଲେଣି । ହରିବୋଲ ହୁଳହୁଳ ନାଦରେ ଗାଁ ସାରା ଉଛୁଳ ଉଠୁଛି । ଦାଣ୍ଡ ମଝିରେ ସାତରା । ଘର କଣରୁ ସମସ୍ତେ ବାହାର ଆସିଛନ୍ତି । ଚନ୍ଦର ମା ଆଜ ଆଗୁଆ । କାଳେ ନାହିଁ, ବେଳେ ନାହିଁ ।

ସଭା ଆରମ୍ଭ ହେଲା । ଜଣେ ବାବୁ କହିବା ଆରମ୍ଭ କଲେ ।

“ବନ୍ଧୁଗଣ, ଗାଁର ମା, ମାଉସୀ, ଭାଇ ଭଉଣୀ ଓ ପିଲାଏ !

ମୁଁ ପ୍ରଥମେ କ୍ଷମା ମାଗି ନେଉଛି ଆପଣମାନଙ୍କୁ ‘ଆପଣ’ କହିବାକୁ ବୋଲି । ସେ ଶବ୍ଦଟାର ଏତେ କଷ୍ଟଗୁଣ ଅଛି ଯେ ପାଟିରୁ

ବାହାରଲକ୍ଷଣି ମଣିଷକୁ ବଲକୁଲ୍ ଚଳ ଉପର କରିଦିଏ । ମଣିଷ ସହିତ ମଣିଷର ମଧୁର ସ୍ନେହ ସୁହାଗରେ ସମ୍ପର୍କ ଜମିଯାଏ; ଥାଏ ଖାଲି ଲୋକ ଦେଖାଣିଆ ଭକ୍ତି ଓ ଭୟର ଅଭିନୟ । ହେଲେ 'ତମେ' ଶବ୍ଦଟା ଏଡ଼େ ମିଠା । ଏତେ ଟାଣୁଆ । ଦୂରଆ ଲୋକକୁ ବି ଟାଣି ଆଣେ ନିକଟକୁ । ମୁଁ 'ତମେ' ବୋଲି କହିବି, କିଛି ଭାବିବନି । ମୋତେ ଭୁଲ୍ ବୁଝିବନି । ମୁଁ ଆଜି ତମ ଗାଁକୁ ଆସିଛି ଟିକିଏ ତମ ସାଥିରେ ମିଶିବି ବୋଲି । ମୋର ଓଜନିଆ ମନକୁ ହାଲୁକା କରିବି ବୋଲି । ତମ ମାନଙ୍କର ହୃଦୟ କେଡ଼େ ସୁନ୍ଦର, ମନ କେଡ଼େ ମଧୁର । ପାହାଡ଼ିଆ ନଈର ମଧୁରିଆ ପାଣି ପରି । ଆମ ସହରିଆ ଲୋକ ଗୁଡ଼ାକର ମନ ସମୁଦ୍ରର ଲହଡ଼ିଆ ଲୁଣିଆ ଜଳ ପରି ।"

"ବାବୁ, କ'ଣ କହୁଛନ୍ତି ! ହେଲେ ଆମ ମଳିମୁଣ୍ଡିଆ ମଫସଲିଆ ଗୁଡ଼ାକୁ ତମ ଆପଣଙ୍କର ଏତେ ଶରଧା ।"

"ବୁଝିଲ ଭାଇ, ମଫସଲିଆ କହି ନିଜକୁ ଏତେ ତଳକୁ ନେଇଗଲେ ଚଳିବନି । ଭଗବାନ ତ ମଫସଲ ଗାଁ ଗଢ଼ିଥିଲେ—ମଣିଷ ପିନ୍ଧା ପଛରେ ଏଇ ହରରଙ୍ଗିଆ ସହର ଗଢ଼ିଛି । ଭଗବାନଙ୍କ ଗଢ଼ଣଠୁ ମଣିଷର ଗଢ଼ଣ କ'ଣ ଏଡ଼େ ସୁନ୍ଦର ହେବ ?"

"ହେଲେ ବାବୁ ତମେ ପାଠ ପଢ଼ୁଆ ଲୋକ—ଯେତେହେଲେ ଆମେ ମୂରୁଖ ।"

"ବୁଝିଲ ଭାଇ, ଦେଶରେ ଆଜକାଲି ଦୁଇ ଦୁଇଟି ଦଳ । ଗୋଟିଏ ପାଠୁଆ ଆଉ ଗୋଟିଏ ଅପାଠୁଆ । ଗୋଟିଏ ଧନୀ ଓ ଆଉ ଗୋଟିଏ ଗରିବ । ଗୋଟିଏ ବୁଦ୍ଧିଆ ଆଉଟି ବୋକା । ଆଗଟିର ଦଣ୍ଡା ସର୍ବଦା ପଛଟି ଉପରେ । ପାଠୁଆର ଅପାଠୁଆ ଉପରେ । ପାଠୁଆ ଦଳର ଧନ, ଦରବ, ରାଇଜ ସବୁ । ଅପାଠୁଆର କିଛି ନାହିଁ । ତାଙ୍କ ମରଜିର ଖେଳନା । ଯିମିତି ନଚେଇବେ ସିମିତି ନାଚିବେ ।"

"ବାବୁ, ପାଠ ନ ପଢ଼ି ଆଗ ମଣିଷ କ'ଣ ଚଳୁ ନ ଥିଲେ ?"

"ହଁ, ଚଳୁଥିଲେ—ମଣିଷ ହୋଇବି ପଶୁପରି । ସେ ଦିନର ଚଳଣି ଆଜିର ଚଳଣି କଣ ସମାନ ଅଛି ?"

"ବିଧାତା ମଣିଷକୁ ବଡ଼ କରି ଗଢ଼ିଚି । କହିଲ, ବଡ଼ କୋଉଥିରେ ? ତା'ଠାରୁ କଣ ବାଘ, ସିଂହ, ହାତୀ ବଡ଼ ନୁହନ୍ତି ?"

"ହଁ ବାବୁ, ହେଲେ ମଣିଷ ବୁଦ୍ଧିରେ ବଡ଼ ।"

"ଠିକ୍ କଥା କହିଲ, ତେବେ ଏ ବୁଦ୍ଧି ତାକୁ ମିଳେ କୋଉଠୁ ?

ପାଠରୁ, ପାଠରୁ !"

"ପାଠ ହେଉଛି ବୁଦ୍ଧିର ପେଡ଼ି । ପାଠ ବଳରେ, ମଣିଷ ସମସ୍ତଙ୍କୁ ଆଜି ଶାସନ କଲାଣି । ପାଣି, ପବନ, ସମୁଦ୍ର । ସେ ପୁଣି ହାତ ବଢ଼ାଇଲାଣି ସରଗ ପୁରକୁ । ତାକୁ ମଧ୍ୟ ଦଖଲ କଲାଣି । ମଣିଷ କଲାଣି ଆଜି ସରଗ ଜୟ । ମଲେ ସିନା ମଣିଷ ସରଗପୁରକୁ ଯାଏ, କିନ୍ତୁ ଯୁଗ ବଦଳାଇଦେଲା । ଜୀଅନ୍ତା ଯାଇ ଜୀଅନ୍ତା ଫେରି ଆସୁଛି । ଲୋକେ କହନ୍ତି, 'ଅମୁକ ଲୋକ ସ୍ୱର୍ଗବାସୀ ହେଲେ । ତାର ଅର୍ଥ ମରିଗଲେ । ଆଜି ସେ କଥା କହିଲେ ଖାଲି ଭୁଲ ହେବନି, ତାହା ମିଛ କଥା ହେବ । ଆମରି ଲୋକେ ସରଗ-ପୁରକୁ ଯାଇ, ଶୁନ୍ଦ ବାଇଜରେ ଚନ୍ଦନ ପକାଇ ଫେରିଲେଣି । ଏ କ'ଣ କମ୍ କଥା ? ଆଜିର ମା'ମାନେ ତାଙ୍କ କୋଳରେ କୁନି ଶୁନ୍ଦଟିକୁ ଝୁଲାଇ ଝୁଲାଇ ଗୀତ ଗାଇବେ—

"ଆ' ଜହ୍ନମାମୁଁ ସରଗ ଶଶୀ,
ରକେଟରେ ଥରେ ଆ'ରେ ଖସି ।
ରକେଟ ଉଡ଼ାଇ ସରଗ ଦେଶେ,
ମୋ କାହ୍ନୁ ଖେଳିବ ମହା ହରଷେ ।"

ପାଟିରୁ ଗୀତଟି ନ ସରୁଣୁ ହସ ହୁଳହୁଳିରେ ଗାଁ । ଦାଣ୍ଡ ପୁଣି ଅତଡ଼ା ହାଣିଲା ।

"ବାବୁ ସତ କହିଲ···ସତ କହିଲ । ଆହା, କେଡ଼େ ମିଠା କଥା ମ । ହେଲେ ପାଠଆ ପାଟିର କଥା ନ ହେଲେ ଅପାଠୁଆ ପାଟିର କଥା !"

"ନା···ନା···ତା' ନୁହେଁ ଭାଇ, ତମ ପାଠିର ମିଠା ମୋତେ କୋଉଠୁ ମିଳିବ ! ହେଲେ ବୁଦ୍ଧିର କରାମତି ଦେଖିଲଣି । ମଣିଷ କ'ଣ ନ କରୁଛି ପାଠ ବଳରେ ।"

"ଆହା, କ'ଣ ନ କହିଲ ବାବୁ । ପାଠ କ'ଣ ନ କଲା । ଧରମରଜା ଯୁଧିଷ୍ଠିର ପିନା ଧରମ ବଳରେ ଦେହେ ଦେହେ ସରଗକୁ ଯାଇଥିଲେ; ହେଲେ ଆଜିର ମଣିଷ ପାଠ ବଳରେ ବୁଦ୍ଧି ବଳରେ ସରଗ ଯାଇ ମରତକୁ ଫେରିଲାଣି ।"

"ଖାଲି ସେତିକି ନୁହେଁ, ସେଠାରେ ମଣିଷ ଯାହା କରୁଛି ଓ ଯାହା କହୁଛି, ମରତ ମଣିଷ ଏଠାରେ ରହି ସେ ସବୁ ଦେଖୁଛି ଓ ଶୁଣୁଛି । ବିଦ୍ୟା ମଣିଷକୁ ବୁଦ୍ଧି ଦେଲା, ବୁଦ୍ଧି ବଳରେ ଯନ୍ତ୍ର ତିଆରି କଲା । ଏସବୁ କଥା ଯନ୍ତ୍ର ଦ୍ୱାରା ସମ୍ଭବ ହେଉଛି ।"

"ଆଜ୍ଞା ଆଜ୍ଞା, ଆମେ କଣ ପାଠ ପଢ଼ିଲେ ଏସବୁ ଜାଣିପିବୁ ?" ହସିହସି କହିଲା ଚଇତନ ସାମଲ ।

"ପଢ଼ିଲେ ସବୁ ଜାଣିବ । ଆଗେ ତ ଅକ୍ଷର ଜ୍ଞାନ ଦରକାର, ତା'ପରେ ତଳୁ ପିନା ଉପରକୁ ଉଠିବା । ତଳ ପାଠ ନ ଜାଣି ଉପର ପାଠ ଜାଣିବା କିମିତି ? ସବୁ କଥାରେ ପାହାଚ ପାହାଚ ହୋଇ ପିନା ଉପରକୁ ଯିବାକୁ ହେବ ।"

"ଲୋକଙ୍କର ସାଧାରଣ ପାଠ ନାହିଁ ବୋଲି ଦେଶ ଉନ୍ନତି ପଥରେ ଆଗେଇ ପାରୁନ । ଗରିବ ପଣିଆ ଦୂର ହୋଇ ପାରୁନ । କୃଷିର ଉନ୍ନତି ହେଲେ ମଣିଷର ଅଭାବ କଣ୍ଟ ରହିବନି । କୋଉ ଅନାଦି କାଳରୁ ମାଟି ମା' ଦୟାକରି ଯାହା ଦେଉଛି ସେତିକି । ମଣିଷ କରମ ଆଦରି ପଡ଼ିଛି । ସବୁ ଦୋଷ ଭଗବାନଙ୍କର ।"

"ଦୋଷ ଆଜ୍ଞା ଆମରି, ବିଧାତା ପୁରୁଷର କାହିଁକି ହେବ ?"

"ହେଇ ଦେଖୁନା, ସରକାର କୃଷିର ଉନ୍ନତି ପାଇଁ ବହୁତ ଯୋଜନା କଲେଣି । ନୂଆ ବିହନ, ନୂଆ ସାର, କେତେ କେତେ ନୂଆ ନୂଆ ଔଷଧ ବାହାରିଲାଣି । ଚାଷ ମଧ୍ୟ ନୂଆ ଢଙ୍ଗରେ ହେବାର ବ୍ୟବସ୍ଥା

ହେଲଣି । ଲୋକେ ପଢ଼ିଲେ ସିନା ସେ ବିଷୟରେ ଜାଣିବେ । ସେ ଜ୍ଞାନକୁ କାମରେ ଲଗାଇବେ । ଅପାଠୁଆ ହେଲେ କରିବା କଣ !"

"ହଁ ଆଜ୍ଞା, ସରକାର ବହୁତ ନୂଆ ନିୟମ ଦଉଚି । ଅଳପ-ଦିନରେ ବେଶି ଅମଳ ହେଉଚି ।"

"ଦେଶ ଆମର ସ୍ୱାଧୀନ ହେଲା । ଲୋକମାନେ ନିଜ ଦେଶର ଶାସନଭାର ପାଇଲେ । ଗୋରା ଲୋକମାନେ ଚାଲିଗଲେ । ଆମେ ଯଦି ପାଠ ଶାଠ ପଢ଼ି, ଜ୍ଞାନ ନ ବଢ଼ାଇବା ଏହା କି ରହିବନି—ଚାଲିଯିବ ।"

"ଠିକ୍ କଥା, ଆମ ଧନ ଆମେ ସାଇତି ନ ରଖିଲେ ଚୋର ଖଣ୍ଡେ ଛଡ଼ାଇ ନେବେ ।"

"ବାସ୍...ବାସ୍... !!"

ସେତିକି ବୁଝିଲେ ହେଲା । ବୁଦ୍ଧିଆ ଲୋକ ହାତରେ ଦେଶର ଡୋରି ପଡ଼ିଲେ ଭାଗ୍ୟ ବଦଳିଯିବ । ଦେଶ ହସି ଉଠିବ । ମୂର୍ଖ ଲୋକ ହାତରେ ପଡ଼ିଲେ ତାହା ରହିବ ? ଆଖି ପିଛୁଳାକେ ପରା ଛାରଖାର ହୋଇଯିବ ।

ସେଇଥିପାଇଁ ପରା କଥାରେ ଅଛି, "ପଣ୍ଡିତେ ମାଡିଲେ ମେଘ ଅସରା, ମୂରୁଖ ମାଡିଲେ ବୈଶାଖୀ ଝଡ଼ ।" ଜାଳି ପୋଡ଼ିଦେବା କଥା ପଚାରୁଛ ?

ଆଚ୍ଛା ଦେଖିଲ ଭାଇ, ଆମେରିକା ତ ଆମରି ଦେଶ ପରି ଗୋଟିଏ ଦେଶ । ସେଠାକାର ଚାଷୀ ଇମିତି ବୁଦ୍ଧି ଖେଳେଇ ଚାଷ କରୁଛି ଯେ, ତାର ଯାହା ଦରକାର ତାକୁ ମେଣ୍ଟାଇ ପୁଣି ବଳକା ଫସଲତକ ଅନ୍ୟ ଦେଶକୁ ପଠଉଚି । ସେଠୁ ଗହମ ଆସିଲେ ଏଠି ଆମେ ବଞ୍ଚିବା । କାହିଁକି ? ବିଧାତା କଣ ଆମକୁ ମାଟି ପୃଥ୍ୱୀ ଦେଇନି ? ଆମେ କ'ଣ ଚାଷ କରୁନୁ । ତାଙ୍କ ଚାଷ ବୁଦ୍ଧିର ଚାଷ ଆମ ଚାଷ ମୂରୁଖ ଚାଷ । ଦେଖୁନ ଆମ ଦେଶରେ "ଜମି ପଡ଼ିଛି ବାଟିକି ବାଟି, ଖାଇବାକୁ ମୁଠେ ନ ପାଏ ପାଟି !"

"ଆଜ୍ଞା, ବିଲକୁଲ ଠିକ । ସରକାର ଦେଶ ବିଦେଶରୁ ଧାନ, ଗହମ, ଚିନି ଆଣି ଯୋଗାଡ଼ ନ ଥିଲେ, କୋଉଦିନୁ ଲୋକେ ମରି ଯାଆନ୍ତେଣି ।"

"ଏଇଟା କ'ଣ ଭଲ କଥା ?"

"ନିଜର ସବୁ ଥାଉ ଥାଉ ପର ଦେଶକୁ ଖାଇବା ପାଇଁ ହାତ ପତେଇବା ଲାଜ କଥା ନୁହେଁ ?"

"ନିଶ୍ଚୟ ଲାଜ କଥା, ହେଲେ କରିବା କଣ ? ଆମ କାଳକ ତ ଇମିତି ଗଲାଣି, ଆଉ..."

"ନା...ନା, ଆଖି ବୁଜିଦେଲେ ସବୁକାଳ ଇମିତି ବିତିଯିବ । କିଛି ବଦଳିବନି, କିଛି ନୂଆ ହେବନି—ସେଇ ପୁରୁଣା, ସେଇ ଅସିଆ କାଳର ମସିଆ କଥା ।"

"ଆଜ୍ଞା, ଆଜିକାଲି ପଢ଼ିଲେ କ'ଣ କାମ ଦବ ?"

"ନିଶ୍ଚୟ କାମ ଦବ । ମୁଁ ପରା ସେଇଥିପାଇଁ ଆସିଛି । ମୋର ଏଇ କେଇପଦ ମନ କଥା ତମମାନଙ୍କୁ କହିବାର ଥିଲା । ଆଗେ ଲୋକ କଣା ବିକା ହେଉଥିଲେ, ଗାଈ, ଗୋରୁ, ଛେଳି, ମେଣ୍ଢା ପରି । ଆଜି ସିନା ସେ ସବୁ ନାହିଁ ତେବେ ବୁଦ୍ଧିଆ ଲୋକ ସବୁଦିନେ ଅଳପ ବୁଦ୍ଧିଆଙ୍କୁ ଦାସ କରି ରଖିଛନ୍ତି ।"

"ହଁ ଆଜ୍ଞା, ଏ ତ ଅଙ୍ଗନିଭା କଥା ।"

"ହେଇ ଦେଖୁନା, ଚାଷୀ ବିଲବାଡ଼ିରେ ଜମିରେ ଖଟୁଛି ଅଥଚ ଜାଣୁନି କମିତି ଠିକ୍ ଢଙ୍ଗରେ ଚାଷ ହେବ । ଅଧିକରୁ ଅଧିକ ପାଇବ । ଅଳପ ପରିଶ୍ରମରେ ବହୁତ ଫଳେଇବ । ଶ୍ରମିକ ଦିନ ରାତି କଳ କାରଖାନାରେ ଧୂଆଁ ସାଥିରେ ଧୂଆଁ ହେଉଛି ଅଥଚ ଜାଣୁନି କ'ଣ କଲେ ତାକୁ ଏତେ ପରିଶ୍ରମରୁ ରକ୍ଷା ମିଳିବ । ମେସିନ୍‌ର ଶକ୍ତି କମିତି ବଢ଼ିବ, ଅଳପ ସମୟରେ ବହୁତ କାମ କରି ବିଶ୍ରାମ ପାଇବ ।"

"ଆଜ୍ଞା, ମନଟା ଆମର ଆଜ ଭାଲୁକା ଲାଗୁଛି । ଭାରି ଆନନ୍ଦ । ଏଇ ପାଠ ମୂଳରେ ତା'ହେଲେ ସବୁ । ବାବୁ ତମେ ଆପଣ ଆଜ ଆମ ମନରେ ଭାବନାର ନୂଆଲୁଗା ପିନ୍ଧେଇ ଦେଲ । ଏ ସଂସାର ସାରା ପୁରୁଣାରୁ ନୂଆ ଆଡ଼କୁ ଆଗେଇଚି । ଆଜିର ଜନମ ଛୁଆ, କାଲିକ ଅଝଟ ପିଲା, ତା ପରଦିନ ଯୁଆନ ତା ପରେ ବୁଢ଼ା । ଦେଖିଲ ନୂଆ ଜୀବନ—ନୂଆ ଜନମ ପାଇଁ ତାର କମିତି ଧଉଡ଼ ।"

"ବାଃ...ବାଃ...କି ସୁନ୍ଦର କଥାଟିଏ କହିଲ ଭାଇ । କେଡ଼େ ବଢ଼ିଆ କଥା । ପାଠୁଆ ଲୋକର ମନକୁ ବି ଏମିତି ବଢ଼ିଆ କଥାଟେ ଜୁଟିବନି । ନୂତନ ଜୀବନ ପାଇଁ ମଣିଷର ଅନବରତ ଚେଷ୍ଟା । ତା ସାଙ୍ଗକୁ ପାଠ ଥିଲେ ନୂଆ ଜୀବନ ଆହୁରି ନୂଆ ହୋଇ ହସି ଉଠିବ । ଆଜ ଦୁନିଅରେ ସବୁ ଖାଲି ନୂଆ ପାଇଁ ଦଉଡ଼ । ଆମେ ସେଇ ପୁରୁଣା ମୂରୁଖ ଜୀବନ ନେଇ ନୂଆ ଦଉଡ଼ରେ ଜିତିବାକି ?"

ହରି ମଳିକ ପାଟିରେ ଦୋକତା ଟିକିଏ ପକଉ ପକଉ କହିଲା, "ଆଜ୍ଞା, ଆଉ ବଞ୍ଚିବୁ ଯେ ଦଉଡ଼ିବୁ । ଯିମିତି ହାଉପାଉ ହୋଇ ଲୋକ ବଢ଼ିଲେଣି ନା – ସଂହାର ତ ହବ । ଯୁଗ ପାଖେଇ ଆସିଲଣି । ଏ ସୃଷ୍ଟି ସଂହାର ହବ ଅଳପ ଦିନରେ । ଏକା ଖାଇବା ବିନା ତ ଲୋକେ ମରିଯିବେ ।"

"ଭଲ କଥାଟିଏ ଉଠାଇଲ । ଦିନେ ତ ସଂହାର ହେବ, ସେଥିପାଇଁ ଭାବିବାର କ'ଣ ଅଛି ? ଦିନେ ସୃଷ୍ଟି ଦିନେ ସଂହାର । ଦୁଃଖ ଲାଗୁଛି ନିଜ ହାତରେ ଆମେ ନିଜକୁ ସଂହାର କରିବାକୁ ଯାଉଛେ । ସମସ୍ତେ ଜାଣୁଛନ୍ତି, ଲୋକ ସଂଖ୍ୟା ବଢ଼ୁଛି ବୋଲି, ତାର ପ୍ରତିକାର କିଏ କ'ଣ କରୁଛି ?"

"ପ୍ରତିକାର ? କ'ଣ କହିଲେ ଆଜ୍ଞା ? ଏ ତ ସରଜନା କାଳର କଥା, ଏଥିରେ ମଣିଷର କ'ଣ ହାତ ଅଛି ?"

"ମଣିଷ ସବୁ କରି ପାରିବ । ଦେଖୁଛ ତ ନଦୀ ବନ୍ଧୁଛି । ଆମର ତ କମ୍ ଉପକାର କରୁନି । ଯେତେବେଳେ କୂଳ ଉଛୁଳାଇ ବାଲିବାଡ଼, ଗାଁ

ସହରର ସବୁ ଧୋଇ ନେଉଛୁ, ସେତେବେଳେ ସହାର ଦେଖୁଛ କ ନାହିଁ ? ଆଜି ତ ପୁଣି ମଣିଷ ବିଦ୍ୟା ବୁଦ୍ଧି ଖଟାଇ, ମାରଣା ନଈକୁ ବାରଣ କରି ଦେଲଣି । ବନ୍ଧ ପକାଇ, ତା ସାପ ଫଣିଆ ସୁଅକୁ କାବୁ କରି ଦେଲାଣି । ସେ ପାଣିକୁ ପୁଣି ବଳ କରାମତି ଖଟାଇ ଦରକାରବେଳେ ନେଇ ବରଷ ସାରା ଫସଲ କରୁଚି । ବିଜୁଳି ଆଲୁଅ ବାହାର କରି ଅନ୍ଧାରକୁ ତଡ଼ି ପାରୁଚି । କଳକାରଖାନା ଚଳଉଚି । ସିମିତି ଜନ ସୁଅ, ମାରଣା ନଈର ଅରଣା ସୁଅ ପରି ମାଡ଼ି ଚାଲିଛୁ । ଦିନ ଆସିବ ମଣିଷକୁ ଏ ପୃଥିବୀର ମାଟି ବି ଅଣ୍ଟିବନି ମୁଠାଏ ମୁଠାଏ ଖାଇବାକୁ । ସ୍ତ୍ରୀଲୋକ ଗର୍ଭଧାରଣ କରିବ, ମା' ହେବ, ଏ ତ ସୃଷ୍ଟିର ନିୟମ । ତେବେ ସ୍ତ୍ରୀ ପୁରୁଷ ଯଦି ଗର୍ଭଧାରଣର ଭିତର ନିୟମ ସବୁ ଜାଣନ୍ତେ; ତାକୁ କିମିତି ବାଧା ଦିଆଯାଇପାରିବ, ତାର ବାଟ ବୁଝନ୍ତେ, ତା' ହେଲେ ଏତେ ଝିଅଙ୍କର କଲବଲ ଆଖି ଦେଖନ୍ତାନି । ବଢ଼ିଲା ଜନସୁଅକୁ ଟିକିଏ ଅଟକାଇ ଦେବା, ତା ଗତିକୁ ଯଦି ଟିକିଏ ଧିମେଇ ଦେବା ଏଥିରେ ପାପ କ'ଣ ? ଆଜି ତ, ଆମ ଦେଶର କୋଟି କୋଟି ଲୋକ ଅପାଠୁଆ, ଆଉ ଦଶବର୍ଷକୁ ଦେଶଟା ଖାଲି ନୂଆ ଅପାଠୁଆରେ ପୂରିଯିବ ସିନା ?"

"ଆଜ୍ଞା ସବୁକଥା ମନକୁ ପାଇଲା । ଆମେ ଏଥର ପଢ଼ିବୁ, ସରକାର ଇସ୍କୁଲ ବସଉ, ମାଷ୍ଟର ଦଉ । ଆମେ ନ ପଢ଼ିଲେ କହିବେ ।"

"ଏଡ଼େବଡ଼ ଦେଶରେ ଏତେଲୋକଙ୍କୁ କ'ଣ ସରକାର ଏକା ଥରକେ ପଢ଼ାଇ ପାରିବେ । ତଥାପି ବହୁତ ସ୍କୁଲ ଚାଲିଛୁ । ତମ ଗାଁରେ ଆଜି ଗୋଟିଏ ଖୋଲିବ । ନାରୀମଙ୍ଗଳ କେନ୍ଦ୍ର ଟିଏ ବି ଖୋଲିବ । ସେତିକରେ ସବୁ ହେବନି । କାହିଁକି···ଏତେ ଲାଜ ସରମ । ଆମ ପିଲାଏ ତ ଇସ୍କୁଲକୁ ଯାଉଛନ୍ତି ତାଙ୍କର ପାଖରେ ଘଣ୍ଟେ ଘଣ୍ଟେ ବସୁନି । ସେ ମହାଖୁସିରେ ତମକୁ ସବୁ ଅକ୍ଷର ଶିଖେଇଦେବେ । ବହି ପଢ଼େଇ ଦେବେ । ତାଙ୍କର ଦୋହରା ପଢ଼ାହେବ, ତମେ ବି ନୂଆ କଥା ଶିଖିବ । ତମ ଟିକି ପିଲା ଯଦି ତମର ଟିକି ଅବଧାନ ହୁଏ, ତେବେ କେଡ଼େ ମଜାକଥା କହିଲ । ଘର ତ ଇସ୍କୁଲ । ଆଉ ଦରକାର କଣ । ଖାଲି ଦରକାର ମନକୁ ବଦଳାଇବା । ସେତିକି ହୋଇଗଲେ ନା, ଦେଖିବ ସେଦିନ ସରଗ ମରତକୁ ଓହ୍ଲାଇ ଆସିବ ।"

ହରିବୋଲ ହୁଳହୁଳିରେ ନରଣଗଡ଼ ଉଚ୍ଛୁଳି ଉଠିଲା । ସଭା ସରିଲା ।

ଆଜି ନୂଆ ବରଷର ନୂଆ ଦିନ ।

ଚନ୍ଦର ମା ଭାରି ଖୁସି । ପୁରୁଣା ବରଷକୁ ଆଖି ଲୁହରେ ବିଦାୟ ଦେଇଛି ।

ନୂଆ ବରଷକୁ ତା ମାଟି ଘର କୁଡ଼ିଆକୁ ଡାକୁଛି ବହୁତ ଶରଧାରେ । ନୂଆ ଅତିଥି ମନ କିଣି ନ ପାରିଲେ ବରଷ ସାରା ହଇରାଣ ହରକତ ।

"କଲେ......ଚନ୍ଦର ମା !

କଲେ କ'ଣ କରୁଚୁ କି ? ପାଣିଚ କାହିଁ, ଫିଟୁନି । ମନ ହରଷରେ ନୂଆ ବରଷ ପାଳୁଛୁ ନା କ'ଣ ?"

"କିଏ... ଅଖାଇ ନାନି ! ସକାଳୁ ସକାଳୁ କୁଆଡ଼େ ମ ?"

"ମଲି ମୋର । ଆସିବାରେ ସକାଳ କ'ଣ ସଞ୍ଜ କ'ଣ । ନୂଆ ବରଷର ନୂଆ ସକାଳରେ ଜଣେ ମନ ଚନ୍ଦନର ସାଥିକୁ ଦେଖିବାକୁ ଭାରି ଇଚ୍ଛାହେଲା, ତୋ ପାଖକୁ ଦଉଡ଼ିଲି । ତୁ ଗୋଟାଏ ଭାରି ଭଲମଣିଷ ।"

"ମଲି ମୋର...ଏକା କଥା ମ । ଆଉ କିଏ ଖାଲି ଅଭଲ ମଣିଷ । ମଣିଷ ପରା ବିଧାତାର ସବୁଠୁ ବଳି ଭଲ ସରଜନା । ତାଠୁ ବଳି ଆଉ କେଉଁ ଶୁଭ ଜୀବ ଏ ଜଗତରେ ଅଛି ! ତା ହାତ ଯୋଉ ମାଟିରେ ଲାଗିଛି ସେଠି ସୁନା ଫଳୁଛି । ତା ପାଦ ଯୋଉ ମରୁଭୂଇଁରେ ବି ପଡ଼ୁଛି, ତାହା ସାଗୁଆ ଗଛଲତାରେ ହସିଛି । ଶୁଣିଛୁ କି ନାହିଁ ଅହଲ୍ୟା ଉଦ୍ଧାର କଥା ? ସେ ପରା ଗୌତମ ଋଷିଙ୍କ ସ୍ତ୍ରୀ ଥିଲେ । ଅଭିଶାପ ପାଇ ପଥର ପାଲଟି ଯାଇଥିଲେ । ରାମଚନ୍ଦ୍ରଙ୍କ ପାଦ ବାଜିବାରୁ ସେ ପୁଣି ନାରୀ ପାଲଟିଗଲେ ।"

"ହଁ, ଶୁଣିଛୁତ ! ହେଲା ସେଠୁ କ'ଣ ?"

"ଆଲେ ଅଖାଇ ନାନି, ତୁ ସିନା ଏ ଗପଟା ଜାଣିଚୁ ହେଲେ ତା ପଛରେ ଯୋଉ କଥାର ମଞ୍ଜି ରହିଛି ତା' କ'ଣ ଜାଣିଛୁ ?"

"ଆଲୋ, ଗପ ତ ଗପ । ପୁଣି ସେଥିରେ କଥା କଣ ରହିଛି ?"

"କଥା କଣ କି କାଲି ଗୋଟିଏ ବହି ପଢୁଥିଲି । ସେଥିରେ ଲେଖା ଥିଲା ହଳ ହେଉ ନ ଥିବା ଯାଗାକୁ ଅହଲ୍ୟା କହାଯାଏ । ମାନେ ଟାଙ୍ଗର ମରୁଭୂମି । ରାମଚନ୍ଦ୍ର ପରି କୃଷିବାସର ଦେବତା ଥିଲେ । ସେ ସେଇ ଟାଙ୍ଗର ଯାଗାକୁ ଯାଇ ପାଦ ଦେଲାକ୍ଷଣି ତାହା ନୂଆ ଫସଲ ଓ ଫଳ ଫୁଲରେ ହସି ଉଠିଲା । ସତେ ଅବା ଲକ୍ଷ୍ମୀ ନିଜେ ହସି ଉଠିଲେ ନାରୀ ରୂପରେ । ରାମଚନ୍ଦ୍ରଙ୍କ ପାଦ ବାଜିବାରୁ ମରୁମାଟି ନାରୀ ଲକ୍ଷ୍ମୀ ପରି ହସିଲା ବୋଲି ଅହଲ୍ୟା ଉଦ୍ଧାରଣ ହେଲା ।"

"ଆଲେ ଚନ୍ଦରୀ ମା, କଥାଟା କେଡ଼େ ବଢିଆ ମ ! ଶୁଣିବାକୁ ସିନା ଗପଟିଏ, ଦେଖିଲା ବେଳକୁ ଗପ ଗାଡ଼ିଆରୁ ମହାଦେବ ବାହାରିଲେ । ହଇଲେ......ଇମିତି ତ କେତେ ଗପ ଅଛି । ସବୁ ଭିତରେ ସିନା ଏଇମିତିଆ କେତେ କେତେ କଥା ଲୁଚିଥିବ । ତୁ ଏସବୁ କଥା କୋଉଠୁ ଜାଣିଲୁ ?

"ମୁଁ"...?

ମୁଁ ଜାଣିଲି ବହିରୁ । ଆମ ନାରୀ ମଙ୍ଗଳ କେନ୍ଦ୍ରକୁ ସରକାରଙ୍କଠୁ ଯୋଉ ବହି ସବୁ ଆସିଛି ସେଥିରେ ଏ ଗପ ଗୁଡ଼ିକର ଭିତିରି କଥା ଲେଖା ହୋଇଛି ।"

"ହଇଲେ...କ'ଣ କହିଲୁ ?"

"ତୁ ଥିଲୁ କାଲି ସକାଳେ ନିଦା ମୂରୁଖ । କ'ଣ ଏଇ କେତେଟା ଦିନ ଭିତରେ ଏତେ ପାଠ ପଢିଲୁ ମ । ଆଲୋ, ଜୀବନ ତୋର ସାରଥକ ଲେ ସାରଥକ ହେଲା । ବୁଢ଼ୀକାଳକୁ ଗୀତା ଭାଗବତ, ପୁରାଣ ପଢ଼ିଲୁ । ମଲାଯାଏ ବି ମଣିଷର ପାଠ ପଢ଼ା ସରେନି, ତୁ ନିଜେ ତାର ସାକ୍ଷୀ ।"

"ଆଲେ ଅଖାଇ ନାନି ! କ'ଣ କହିବ ମ ଲାଜ କଥା । କାଲି ରାତିରେ ମୁଁ ହସି ହସି ମୋ ପେଟ ଧୋଇ ହୋଇଗଲା ।"

"କଲେ, କ'ଣ ହସଲଡ଼ୁ ଖାଇଥିଲୁ କି ? ଶୁଣେ କଥାଟା କଣ ?"

"କଥା କ'ଣକ ସେ ବୁଢ଼ାଟା ମ…!"

"ଆଲେ କୋଉ ବୁଢ଼ା ?"

"ହଁ ମ ଯେଇ ପାକୁଆ ବୁଢ଼ାମ, ଚନ୍ଦର ବାପା !"

ଅଖାଇ ନାନୀ ହସିହସି ଲୋଟିଗଲା ଭୂଇଁରେ ।

"ଆଚ୍ଛା କଥା, ବୁଢ଼ା…ପୁଣି ଯେଇ ବୁଢ଼ା… ଫେର୍ ପାକୁଆ ବୁଢ଼ା… ଶେଷରେ ପୁଣି କ'ଣ ନା ଚନ୍ଦର ବାପା ! ଏ କୋଉ କାଳର କଥା ମ । ବୁଢ଼ାଟାକୁ ଏତେ ହତାଦର କାହିଁକି ? କହେ, କ'ଣ ହେଲା ?"

"ହଁ ମ ଶୁଣିଲୁଣିନା… ଘର ସବୁଟରେ ମୋତେ ଡାକୁଛନ୍ତି କୋ…ଇ…ଲି । ମୋ ଭାଗବତ ପୁରାଣ ପଢ଼ାଶୁଣି କହୁଛନ୍ତି କୋଇଲିପରି ବୋବୁଛୁ । କଣ ବୋଲକିନା ମୁଁ ସଞ୍ଜବେଳେ ପୁରାଣ ପଢ଼େ, ସେ ଶୁଣନ୍ତି । ଆଉ କୋଉ ଜଞ୍ଜାଳ ଅଛି ସେ ! ହେଲେ, ଆଗେ ସେ ବିଲରୁ ଆସି ଗାଁ ଦାଣ୍ଡକୁ ପଳାଉଥିଲେ । ଯୁଆ କଳି, ତା ଗୋଳମାଳ, କୁଟ, କପଟ ପେଞ୍ଚପାଞ୍ଚ ସବୁଥିରେ ସେମାନଙ୍କ ଗହଣରେ ବସି ସମସ୍ତଙ୍କୁ କଟଉଥିଲେ । ଝିଅଟି ପରଗୋତ୍ରୀ ହେଲା ଦିନଠୁ କୋଳ ତ ଭୁଛା । ମୁଁ ଏକୁଟିଆ ଘରଟାରେ ପଡ଼ିଥାଏ । ଏଣୁ ତେଣୁ କଥାର ଅଡୁଆ ସୂତା ମୁଣ୍ଡା ଖେଳାଇବାରେ ଲାଗେ । ଇମିତି କେତେବେଳେ ବନ୍ଦ ହୋଇଯାଏ…ଜାଣି ପାରେନା । ହେଲେ, ଆଜକାଲି ସେ ଆଉ ଯାଉ ନାହାନ୍ତି ପଦାକୁ । ପୁରାଣ ପଢ଼ା ଆରମ୍ଭ ହୋଇଗଲେ ବୁଢ଼ାଙ୍କୁ ଆଉ ଉଠାଏ କିଏ ? ଗାଁର ସଭାସମିତି ହେଲେ ଡକରା ଆସେ । ସେ ଲୋକମାନଙ୍କୁ କହିଦିଅନ୍ତି, 'ତମେ ଯାହା କରିବ, ମୋର ସେଥିରେ ଆପତ୍ତି ନାହିଁ ।' ପୁରାଣ ଅଧା ଶୁଣି ଯାଆନ୍ତିନ । ପାପ ହେବ ।"

"ଆଲୋ ଚନ୍ଦର ମା ! ଭୁତ ବୁଢ଼ାକୁ ଆଚ୍ଛା ଖାପଟରେ ପକେଇଛୁ । ଶେଷକାଳକୁ ତା କାନରେ ହରିନାମର ଅମୃତ ଢାଳୁଛୁ…ଆଉ କ'ଣ ଅଧିକ କରନ୍ତୁ । ତୋର ସ୍ତ୍ରୀର ଜନମ ସାରଥକ ।"

"ବୁଝିଲୁଣି ନା ଅଖାଇନାନୀ । ଆଉ ଗୋଟାଏ ଲାଜକଥା କ'ଣ କହିବ !"

"କଲେ, ଲଜ କ'ଣ ! କହୁନୁ, କ'ଣ କହୁଛୁ ?"

ହଁ ମ, ପଢ଼ିଲାବେଳେ ଟିକିଏ ଟିକିଏ ଅଟକି ଯାଏ, ବୁଢ଼ା ଭାବନ୍ତି ମୋର ସବୁ ଅକ୍ଷର ଗୁଡ଼ାକ ବୋଧହୁଏ ପାଇଠ ହୋଇନ। ହନେ ଲଜ ଲଜ ହୋଇ କହିଲି, "ନା···ମ, ଅକ୍ଷର, ମାତ୍ରା, ଫଳା···ସବୁ ଶିଖିଲିଣି ଯେ ଭଲକରି ଦିଶୁନି ବୋଲି ମଝିରେ ମଝିରେ ଅଟକି ଯାଉଛି। ଯୋଉଟେ ଛପା ଭଲ ଉଠିନି ସେଇଟେ ବୁଦ୍ଧି ଖେଳାଇ ଠିକ୍ କରିବାକୁ ହୁଏ, କଣ ଲେଖା ହୋଇଛି ବୋଲି। ଆଲେ, କୁହାନାହିଁ ପୁଛାନାହିଁ ହନେ ବାଡ଼ିରୁ କଦଳୀ କାନ୍ଦିଏ ନେଇ ହାଟକୁ ଗଲେ। ତାକୁ ବିକି ଦେଇ ଗୋଟିଏ ଆଠ ଟଙ୍କିଆ ଚଷମା ଆଉ ଗୋଟିଏ ଲକ୍ଷ୍ମୀପୁରାଣ କିଣି ଚୁପ୍ ହାତରେ ଫେରିଲେ। ଆଲେ, ପନି କାଇଁ ପରିବା କାଇଁ, ତେଲକାଇଁ ଲୁଣକାଇଁ। କିଛି ନ ପୁଣି ହସ କଣ, ପାକୁଆ ପାଟିର ବନ୍ଧ ଉଛୁଳାଇ ହସ ଖାଲି ଝରୁଛି। ମୁଁ କିଛି ବୁଝି ପାରିଲିନି, ବୁଢ଼ା ହାଟରୁ ଧାଇଁ ଧାଇଁ ତ ଆସିଲେ କ'ଣ ଇମିତି ସରଗ ରାଜ ପାଇଲେ ଯେ ହସ।"

"ସେଠୁ କ'ଣ ହେଲା ଲୋ ? କ'ଣ ଭାରି ତ ଗୋଟାଏ ମଜାଗପ। ତାପରେ ?"

"ତାପରେ ହାତକୁ ବହି ଓ ଚଷମାଟା ବଢ଼ାଇ ଦେଇ ହସି ଉଠିଲେ। ମୋର ସେତେବେଳକୁ ରାଗ ପଞ୍ଚମରେ। କହିଥିଲି ନାତି ପାଇଁ ପେଣ୍ଟ, ସାର୍ଟ ଦୁଇଟା ଆଣିଲେ ମୁଁ ଝିଅ ଘରକୁ ଯାଇଥାନ୍ତି।"

ବୁଢ଼ା ହସି ହସି କହିଲେ, "ଆଲୋ ରାଗୁଛୁ କଣ, ଆମର ଗୋଟିଏ ଘର ଯେ ଲକ୍ଷ୍ମୀଙ୍କର ପୁରାଣଟିଏ ନାହିଁ, ଲକ୍ଷ୍ମୀ ଆସିବେ କୋଉଠୁ ? ସମସ୍ତେ ତ ଅପାଠୁଆ ଥିଲେ, ସେତେବେଳେ ପୁରାଣ ଆଣିଥିଲେ କ'ଣ ଲଭ ହୋଇଥାନ୍ତା ! ଲକ୍ଷ୍ମୀଙ୍କ ଖଟୁଲୀରେ ପୋଥିଟିକୁ ଥାପନା କରିବୁ। ନିତି ନିତି ଅଧିଆଏ ଲେଖାଏଁ ପଢ଼ିବୁ। ଲକ୍ଷ୍ମୀ ସନ୍ତୁଷ୍ଟ ହେବେ। ଉଙ୍କୁଣିରୁ ଉନ୍ନତି ହେବ। ଆଉ ଏଇ ଚଷମାଟା। ଏଇଟା କ'ଣ ବଦଖରଚ ? ଆଖିକୁ ସିନା ଭଲ ଭାବରେ ଦିଶିଲେ ପୁରାଣ ପଢ଼ିବୁ, କାମ ପଦାସ୍ଥା କରିବୁ; ନ ଦିଶିଲେ କରିବୁ କଣ ? ଏ ଥରକର ଖରଚ, ଜନ୍ମ ଜନ୍ମକର ଲଭ। ନାତି

ଟୋକା ପାଇଁ ଏଥର ନ ହେଲେ ଆରଥରକୁ ଜାମା କୁରୁତା ଆଣିବା । ଏକୋଇଶିଆ ତ ଆହୁରି ପନ୍ଦର ଦିନ ଅଛି । ଏତେ ଘବୁରୁଛୁ କାହିଁକି ?"

"ଗଗ ମୋର ଶିଆନ୍ତ ହେଲ । ଘବଲ ବୁଢ଼ା ଠିକ୍ ବୁଝିଛନ୍ତି । ଯା'ଘରେ ଲକ୍ଷ୍ମୀଙ୍କର ପାଦ ପଡ଼ିବ ତା'ର ଆଉ ଚିନ୍ତା କଣ ?"

"ଠିକ୍ କହିଲୁ ଲୋ ଚନ୍ଦରମା, ଭୁ ଚକ୍ଷୁଦାନ ପାଇଲୁ ।"

"ମୁଁ ଯାଉଛି, ତେଣେ ବୋହୂଟା ହଇରାଣ ହେଉଥିବ ।"

"ସୁବିଧା ହେଲେ ଦ'ପହରେ ଆସିବ । ଲକ୍ଷ୍ମୀପୁରାଣ ଅଧିଆଏ ଶୁଣିଯିବ ।"

"ହଁ ମ, ଆସିବୁ···ଆସିବୁ । ତୋ ବୋହୂରାଣୀକୁ ଟିକଏ ଆମ ଘର ଆଡ଼େ ବୁଲାଇ ଆଣିବୁନ !"

"ଆଣିବି···। ଯାଉଛି ।"

"ହେ···କଗୋ ! କୁଆଡ଼େ ଗଲ ମ ! କ'ଣ ଶୁଭୁନି କି ! କୋଇଲି କୁଆଡ଼େ ଉଡ଼ି ଗଲାନା କ'ଣ ମ !"

"ମଲା ମୋର, ଏ କି ଡ଼ାକ ମ ! ମୁଁ କ'ଣ କାଠ ନା ପଥର ? କାହିଁକି ? କ'ଣ ହେଲା କି ?

"ହେଇ···ଡାକବାଲା କ'ଣ ଗୋଟାଏ ଚିଠି ଦେଇଗଲା । ପଗୁରିଲି କୋଉଠୁ ଆସିଛି, କହିଲା ପଢ଼ିଲେ ଜାଣିବ । ଫୋପାଡ଼ି ଦେଇ ଚାଲିଗଲା ।"

"ଦେଖେ···କୋଉଠୁ ଆଇଚି ।"

"ଏଁ···ଏ' ତ କଣ ମୋ ଚନ୍ଦ୍ରମାର ଚନ୍ଦ୍ରଉଦିଆ ଲେଖା । ସେ ତ ଏଇ ଡାକେ ବାଟରେ ଅଛି, ପୁଣି ଚିଠି କ'ଣ ଦେଲା ?"

ବୁଢ଼ୀ ତର ତର ହୋଇ ଚିଠିଟିକୁ ଟିକ ପକାଇ ଆଗ ଆଖି ଓକାଇଦେଲା ତଳକୁ । କାହା ନାଁ ଲେଖା ହୋଇଛି । ମନ ମଧ୍ୟରେ

ସେତକ ଆନନ୍ଦ ସେତକ ମଧ୍ୟ ଭୟ । ବୁଢ଼ା ବନ୍ଧ ବନ୍ଧ ହୋଇ ଗୁହିଁ ରହିଥାଏ ବୁଢ଼ୀ ମୂହଁକୁ । ସତେ ଯେମିତି ସେ ବୁଢ଼ୀ ମୁହଁର ଭାବଭଙ୍ଗୀ ଦେଖି ତା' ଗହିରି ମନର କଥା ଗୁଡ଼ାକ ପଢ଼ି ପକାଉଛି ।

"ହଁ ତ ମୋ ଚନ୍ଦ୍ରମା ଲେଖିଛି । ଦେଖେ ଲେଖିଛି କ'ଣ ?

"ମା,

ବାପା ଆଉ ତୋର ଶ୍ରୀଚରଣେ ମୋର କୋଟି କୋଟି ଜୁହାର ।

ତୁ ଏ ଚିଠିଟି ପାଇ ଚମକ ପଡ଼ିବୁନ । ତୋ ଜୁଆଁଇ ଦୁଇଦିନ ଛୁଟି ନେଇ ଆସିଥିଲେ । ତାଙ୍କୁ କଟକରୁ ଅନୁଗୁଳକୁ ବଦଳି ହୋଇଛି । ଯେ ସେଠାରେ ସରକାରୀ ଘରଟିଏ ପାଇଛନ୍ତି । ତୁ ତ ଜାଣିଚୁ ତାଙ୍କର ପେଟ ବେମାରି । ହୋଟେଲରେ ଖାଇବାକୁ ଡାକ୍ତର ମନା କରିଚି । ତାଙ୍କର ଇମିତି କାମ ଯେ ରନ୍ଧାବଢ଼ା କରିବାକୁ ଟିକିଏ ବି ଫୁରୁସତ ନାହିଁ । ବାବୁଙ୍କୁ ଜୁହାପୁଛା କରି ଦୁଇଦିନ ପାଇଁ ଆସିଥିଲେ । ଜିନିଷ ପତ୍ର ଠିକ୍ ଠାକ୍ କରିବାରେ ଲାଗିଗଲେ । ସମୟ ହେଲାନି ତମମାନଙ୍କ ଦରଶନ କରି ଆସିବାକୁ । ଆସିଲା ବେଳେ ଭାରି କାନ୍ଦ ମାଡ଼ିଲା । ତୁ ଓ ବାପା ଆଖି ଆଗରେ ଖାଲି ନାଚିଲ । ଶାଶୁ ଗାଳି ଦେଲେ, କହିଲେ ଗଲା-ଆସିଲାବେଳେ କାନ୍ଦୁଛୁ କ'ଣ ମ, ଅମଙ୍ଗଳ କଥା ! ହେଲେ ଟୁକୁନାକୁ ଯେତେବେଳେ ମୋ ହାତକୁ ବଢ଼ାଇ ଦେଲେ, ଆଖି ଲୁହରେ ପୁଅ ଦେହ ଭିଜିଗଲା ଓ ପିଲାଟା ସତେ ଯିମିତି କିଏ ଶିଖାଇଲା ପରି କାନ୍ଦରେ ଛାଙ୍କି ଉଠିଲା । ସେତକବେଳେ ବୁଝିଲି ରକତ କମିତି ରକତକୁ ଟାଣେ । ଛୁଆଟା ମୋ ଠୁଁ ଦୁଧ ଖାଉ ନ ଥିଲେ ସେ କଦାପି ଛାଡ଼ ନ ଥାନ୍ତେ । ଘର ଚୁକ୍ତା । ଶଶୁର ଠାକୁରେ ଆସି ଛାଡ଼ ଦେଇଗଲେ । ଅମଳ ପରେ ଶାଶୁ ବୁଢ଼ୀ ଆସି ମାସେ ଅଧେ ରହି କରିଯିବେ । ସେ କହୁଛନ୍ତି, ଡାକ୍ତରବାବୁଙ୍କୁ କହି ଡାକ୍ତରଖାନାରେ ଧାଈକାମରେ ରଖେଇ ଦେବେ । ତୋର ଇଚ୍ଛା କଣ ଲେଖିବୁ ।"

ଟ୍ରା
ଅନଗୁଳ ଗୋଟିଏ ଭଲ ଜାଗା । ହର ପରିଷ୍କାର । ଜନଷପଣ କନ୍ତୁ ଆମ ସେଠା ଅପେକ୍ଷା ମହଙ୍ଗ । ସୁବିଧା ହେଲେ ଥରେ ଆସି ବୁଲିଯିବୁ ଓ ବାପାଙ୍କୁ ପଠାଇବୁ । ଟୁକୁନା ପା···ପା, ଆ···ମା ଇମିତ ଡାକିଲଣି । ମା ମଙ୍ଗଳାଙ୍କୁ ସୁମରଣା କରି ରହିଲି ।

। ଇତି ।
ତୋର
ଅଲଅଳ ଚନ୍ଦ୍ରମା"

ଝୁପିଲି ହସରେ ବୁଢ଼ା ଭାଇଗର ଓଠ ଥରୁଥାଏ । ବୁଢ଼ୀ ବଗ୍-ବଜସ୍ତୁ କଲପରି ବୁଢ଼ା ମୁହଁକୁ ଗୁହିଁ ରହିଲା ।

ବୁଢ଼ା ହସି ପକାଇ କହିଲା, "ଗଡ଼ କଟିଗଲୁ । ମା'ତ ପାଠ ପଢ଼ି ପୁରାଣ ଭାଗବତ ପଢ଼ିଲା, ଚଠି ପତ୍ରର ପଢ଼ିଲା । ଝିଅ ତ ପାଠ ପଢ଼ି ଗୁକରିକ ଗୋଡ଼ ବଢ଼ାଇଲାଣି ଆଉ ଚନ୍ତା କଣ ? ହେଲେ ମା ଝିଅ ଧଲ୍ସୁତର ହୋଇ ପାଠ ପଢ଼ିଲ । ଅପାଠୁଆ ବୁଢ଼ାଟାକୁ କ'ଣ ଆଉ ପଗୁରିବ ?"

ବୁଢ଼ୀ ଟିକଏ ଅଭିମାନିଆ ଗଳାରେ କହିଲା, "ଥାଉ, ଥାଉ ସେ ନଉଛୁଣା କଥା ଗୁଡ଼ାକ । ମୁଁ ପିଲା ନୁହେଁ ଯେ କଥା କହି ମନ ବଦଳାଇ ଦେବ ! ମୁଁ ଇମିତି ମିଣିପ ଦୁନିଆ ଯାକରେ ଦେଖିନ । କାନେ କାନେ କହିଲ ଛୁଆଟା ପାଇଁ ଜାମାକୁରୁତା ଆଣିଲେ ମୁଁ ଟିକଏ ଦେଖି ଆସିବ । ନାହିଁ ନ ହେଲା । ସେ ଗଲା ପଛକେ ମୁଁ ଆଉ ଯାଇ ପାରିଲନ । ସେଇ ଏକୋଇଶିଆକୁ ଥରେ ଯାଇଥିଲ ଯେ ଯେତକ । ପଟେ ଖରଚ କଲନି ଏଥର ପାଞ୍ଚପଟ ଖରଚ କରିବାକୁ ହେବ । ମୁଁ କରୁ ଶୁଣିବନ । ଏଇ ହାଟପାଳି ନାତି ପାଇଁ ଜାମା କୁରୁତା ଓ ଝିଅ ପାଇଁ ସମ୍ବଲପୁରୀ ଶାଢ଼ୀଟାଏ ଅଲବତ ଆଣିବାକୁ ପଡ଼ିବ । ମୁଁ ଅନଗୁଳ ଯାଇ ଛୁଆକୁ ମୋର ଦେଖି ଆସିବ ।"

"ହଁ, ମ କେତେ ବକବକ ହଉଚୁ । ଚଠିଟା ଶୁଣି ମନଟା ଖୁସି-ହେଲା ବେଳକୁ ପାଲା ଆରମ୍ଭ କରିଦେଲା । ଆଚ୍ଛା କଳିହୁଡ଼ୀ ବୁଢ଼ୀଟେ !

କଲେ, ଗୋଟେ ବୋଲ ତୁଆ, ତା ପିଛୁ ଖରଚ କରିବାକୁ ତ ଆଉ କାହା ପିଛୁ ଖରଚ କରିବ । ଖାଲି ସେତିକ ନୁହେଁ ଝିଅ ପାଇଁ ବି ଲକ୍ଷ୍ମୀ-ପୁରାଣଟେ କିଣି କରି ଆଣିବ । ତୁମେ ଗଲାବେଳେ ସାଥିରେ ନେବ ।

ବୁଢ଼ୀ ମହାଆନନ୍ଦରେ ନାଚ ଉଠିଲା । ଭାଗବତ ବାଣୀ କ'ଣ କେବେ ମିଛ ହୁଏ ?

"ଏ ମନ ଭାବୁଥାଇ ଯାହା,
କାଳେ ପ୍ରାପତ ହୁଏ ତାହା ।"

"ହେଲେ ସବୁ ହେଲା, ରହିଲା ଆଉ ଗୋଟିଏ କଥା ।"

"କ'ଣ ସେ କଥାଟା ଶୁଣେ । ମଣିଷ ଯାହା ଚାହିଁବ ସବୁ ଯଦି ପୂରଣ ହେବ ସେ ତ ଠାକୁରଙ୍କୁ ଆଉ ମାନିବେନି ।"

"ମୋର ତ ଯିମିତି କିଛି ନ ହେଲା ପରି ଗୁହାରି ଠାକୁରଙ୍କ ପାଖରେ ନାହିଁ । ନହାତି ଗ୍ରେଟ ଗୁହାରିଟିଏ । ସେ କଣ ଶୁଣିବେନି ?"

"ଗ୍ରେଟ ହେଉ କି ବଡ଼ ହେଉ, ଗୁହାରି ପଛରେ ମନର ବ୍ୟାକୁଳଭାବ ନ ଥିଲେ ଭଗବାନ ଶୁଣନ୍ତିନି । ବ୍ୟାକୁଳ ହୋଇ ଡାକ ଜାଣିଲେ ଯିନା ତାଙ୍କ ଆସନ ଥରିବ, ନ ହେଲେ ସେ ଶୁଣିବେ କାହିଁକି ? ଜଗତର ରଜା ସେ । କେତେ ଜୀବଙ୍କର କେତେ ବ୍ୟାକୁଳ କାନ୍ଦଣା ତାଙ୍କ ପାଖରେ ପହଞ୍ଚୁଥିବ, ଖାଲି ତୋ କଥା ଶୁଣିବା ପାଇଁ କ'ଣ ସେ ଚାହିଁଛନ୍ତି ?"

"ନାଇଁ ମ, କଥା କ'ଣ କି, ଆମ ଘରେ ଯମସ୍ତେ ପାଠ ପଢ଼ିଲେ, ବାକି ରହିଲ ତମେ !"

ବୁଢ଼ା କଥାଟା ଶୁଣୁ ନ ଶୁଣୁ ଇମିତି ହସି ଉଠିଲା ଯେ ଯତେ ଯିମିତି ଘରର ଛାତ ଫାଟି ପଡ଼ିବ ।

"ମଲା ମୋର···! ହସୁଛ କ'ଣ ମ ! କଥାଟା କଣ ମନକୁ ପାଇଲାନି ? କୋଉ ନାଚିବା କଥା ମୁଁ କହିଲି ଯେ ଏତେ ଚାହୁଁଲିଆ ହସ ।"

"ଛୁଃ···କଣ କହୁଲୁ ଚନ୍ଦର ମା ! ମୁଁ ତୋତେ ଟାହୁଲ କରୁଛି ? ମାନେ, ମୋ ପାଇଁ ତ ବାଉଁଶ କଷ୍ଟ କଷ୍ଟ କଲାଣି । ଆଉ ବା କେତେ ଦିନ ? ଯାହୁ ତାହୁ କଟିଗଲେ ଗଲା !"

"ଥାଉ, ଥାଉ ସେ ନିଆଁ ଲଗା କଥାଗୁଡ଼ାକ । ଏଇ କଥାତ କହୁ କହୁ ସାରା ଜୀବନଟା କଟିଗଲା । ଆଚ୍ଛା, ମୁଁ କଥା ପଢ଼ିବି, ତମେ କଥା ଶୁଣିବ । ତମେ କଥା ନିଜେ ନ ପଢ଼ିବ ? ଏ ବୁଢ଼ା ବଅସରେ ମାଟି ଛାଡ଼ି ନୂଆ ଜମି କରି ପାରୁଚ, ଆଗତା ଗୃହବାସ ପାଇଁ ଏବେଠୁଁ ସାଜ ସରଞ୍ଜାମ ଯୋଗାଡ଼ କରି ପାରୁଚ । କୋଉଥିପାଇଁ···ଖାଲି ଆଶା ନେଇତ ! ମଣିଷ ଆଗିଲା ଆଶା ନେଇ ବଂଶ ରହେ । ମାଟି ଖୋଳାଠୁ ଅକ୍ଷର କେଇଟା ଶିଖିବା କ'ଣ ବେଶି କଷ୍ଟ କଥା ? ମନ ମାଟିକୁ ଟିକଏ ଏପାଖ ସେପାଖ କରି ଅକ୍ଷର ମଞ୍ଜି ପୁଞ୍ଜାଏ ପୋତିଦେଲେ ପାଠ ଫଳତ ଦୁ'ମାସରେ ଫଳିବ, ସେ ଧନତ ସାରା ଜୀବନ ରହିବ । ଯେତେ ଖରଚ କଲେବି ସରିବନି— ବଢ଼ିବ ସିନା । କଥାରେ ପରା ଅଛି, ଧନ ଦରବ ବାଣ୍ଟି ଦେଲେ ସରିଯାଏ ହେଲେ ପାଠ ଧନ ଯେତିକ ବଣ୍ଟାଯାଏ ସେତିକ ବଢ଼େ ।"

"ତୋଠାରେ ହାରି ମାନିଲି ଚନ୍ଦର ମା···ସବୁକଥାରେ ଜିତିଯାଉଚୁ । ହେଲେ ମୁଁ ପାଠ ପଢ଼ିବି ଯେ, ମୋତେ ପଢ଼ାଇବ କିଏ । ମୁଁ ରାତି ସ୍କୁଲକୁ ଯିବିନି । ଲାଜ ମାଡ଼ିବ ।"

ଓହୋ, ଇସ୍କୁଲକୁ ଯିବ କିଆଁ ! ଏଇ ସଞ୍ଜବେଳେ ଦୁ'ପହରେ ଦିନକୁ ଦୁଇ ଘଣ୍ଟା ଅକ୍ଷର ମଡ଼ାଇଲେ ଦୁ'ମାସରେ ପାଠ । ଛଅମାସ ବେଳକୁ ଭାଗବତ, ପୁରାଣ, ମହାଭାରତ ସବୁତ ପଢ଼ା ହେବଣି ।"

ବୁଢ଼ା ଖୁବ୍ ଜୋରରେ ହସି ହସି କହିଲା, "ଭଲ ମାଷ୍ଟରଟାଏ ମିଳିଗଲା ବୁଢ଼ାକୁ, ହେଲେ କାନ ମୋଡ଼ାଟା ନ ହେଲେ ହେଲା ।"

ଚନ୍ଦର ମା ଲାଜେଇ ଯାଇ ମୁହଁ ମୋଡ଼ି କହି କହି ପଳାଇଲା— "ପାକୁଆ ବୁଢ଼ାର ସଉକ ଦେଖ ।"

ନରଣଗଡ଼ । ଏ ବିଶ୍ୱ-ବ୍ରହ୍ମାଣ୍ଡର କେଉଁ କୋଣର ଗୋଟିଏ ଲୁଚିଲ୍ ଗାଁ । ପୁଣି ତା'ର ଭିତରେ ଭାଇଗ ବୁଢ଼ାର ଝାଟି ମାଟି କୁଡ଼ିଆ । ଅନ୍ଧାର ଭିତରେ ଆହୁରି ଅନ୍ଧାରୁଆ । ତାଠୁ ବଳି ଅନ୍ଧାର ଥିଲ୍ ତା' ସାରା ପରିବାରର ଅପାଠୁଆ ମନ । ବିଳମ୍ବ ହେଲେବି ମନ ତାଙ୍କର ବୁଝିଲ୍, ବୁଝି ଢଗିଲ୍ । ଗୋଟାଏ ଆଡ଼େ ଅଭାବ, ଅନଟନ, ରୋଗ ଯାତନା ଓ ବସ୍ତୁଦର ଟଣା ଓଟରା, ଆଉ ଗୋଟାଏ ଆଡ଼େ ପାଠ ବା ଆଲୁଅର ଡ଼ାକରା । ସବୁ ଦୁଃଖ ଭିତରେ ବି ସେ ଆଲୋକକୁ ଆଦରରେ ପାଛୋଟି ନେଇଛନ୍ତି । ଆଜି ତାଙ୍କରି ପାଖରେ "ସରଗ ଛୁଇଁଛି ମରତ ମାଟି !" ଅଜ୍ଞାନ ଅନ୍ଧକାର ଦୂରେଇ ଯାଇଛି ॥

# ପୁନର୍ଜନ୍ମ

"କଟଲ୍ ଅଲେଇ ଓଲେଇ ଘରର ଝିଅ !

କଟଲୀ, ତୋ ମା' ତୋତେ କଛି ଶିଖେଇନ ? ଗାଧୋଇଆସି ସିଧା ସଳଖ ଶୋଇବା ଘରକୁ କ'ଣ ଚ୍ଲଲଗଲୁ ! ଆଜ ହବନ···ହବନ । ଏତେ ଅନସୂଚ, ଏତେ ଅନାଚାର ! ବାରବ୍ରତ ତେର ଉପାସ କର ପାଇଥିଲ ଏକୋଇରବଳା ବଶିକେଣ୍ଡ । ଏ ଡାକୁଣୀ ତାକୁ ରଖିବନ···ରଖିବନ ।"

"ବୋଉ କଣ ହେଲ କ, ବରକ୍ତ ହେଉଛ କାହିଁକ ?"

" ହେ···ଇ···ଲେ, ଅଲକ୍ଷଣୀ କହୁଛି—ବରକ୍ତ ହେଉଚ କିଆଁ ? କଲେ, ବରକ୍ତ ହେବନ ତ ତତେ କଣ ମୁଣ୍ଡରେ ବସାଇବ । ହଇଲେ ମୋ ପୁଅ ଲଗି ତୁ ବୋହୂ ? ଆଲେ, ସେ ଲକ୍ଷେ ରଜାର ମଉଡ଼ ମଣି, ତୁ କୋଉ ଚୂଡ଼ରେ ତା ପାଯଙ୍ଗରେ ପଡ଼ବୁ ? ଏ ଘର ଲଗି ତୁ ବୋହୂ ! ଅଲକ୍ଷଣୀ ପଚ୍ରୁଛି—ବରକ୍ତ ହେଉଚ କିଆଁ ?"

"ବୋଉ, କହୁନ ମୁଁ କ'ଣ କଲ ? ଯଦ କଛି ଭୁଲ ଭଟକା କରଛି ଠିକ୍ କର ଦେଲେ ହବନ ?"

"ଆଲେ, ଠିକ୍ କରବୁ ?······

ମୋତେ ଠିକ୍ କରବୁ ?

ତୋ ବାପର ମୁଁ ଖାଏ ନା ଧାରେ ? ତୋ ବାପ ଅଳପେଇସ ମୋ ଘରକୁ କୋଉ ଅମାର ପଠେଇ ଦେଇଛନ୍ତିକ ? ବୋହୂ ହେଇ ଘରକୁ ଆସିଛୁ

ଯେ ଦାନ୍ତକାଠି ବଡ଼େ ବ ବାପ ଦେଇନ—ବାହାଦୁରୀ କାହାକୁ ଦେଖାଉଛୁ ମ ! ଆଲେ ମୋତେ ତୁ ଠିକ୍ କରିବୁ ?"

"ମୁଁ କ'ଣ ସେଇଆ କହିଲି ବୋଉ ? ମୋର କ'ଣ ଭୁଲଥିଲେ ଠିକ୍ କରିନେବି ବୋଲି ସିନା କହିଲି···ତମେ ଓଲଟା ବୁଝିଲ ।"

"ହେ···ଇ···ଲେ, ମୋତେ ଫେର କହିଲଣି ଓଲଟା । କାଲେ ତୋ ମୁହଁ ବଢ଼ିଗଲଣି କ , ଯା' ମନ ତା' କହିଯାଉଛୁ । ତୁ କଣ ଭାବୁଚୁ ମୁଁ ନଆଣ୍ଡା, ନମୁଣ୍ଡି, ଦେଖିବୁ ଅବକା କ'ଣ କରିପାରେ ?"

"କାଲେ ବୋଉ, କ'ଣ ହେଲା ? ତୋତେ କିଏ କ'ଣ କହିଲା ?" ସ୍କୁଲରୁ ଫେରି ଅସି ପଚାରିଲା କାମିନୀ । ରାଗରେ ମୁହଁ ତାର ଲାଲ ପଡ଼ି ଯାଇଛି ।

"ଆଲେ କିଏ ଆଉ କହିବ । ମୁଁ ତ ପୋଇଲି ଏ ଘରେ, ମୋ ବୋହୂରାଣୀ ଛଡ଼ା ଆଉ କିଏ କହିବ ? ହେଇ ଦେଖୁନୁ କହୁଛି— ଠିକ୍ କରି ଦେବ, ଓଲଟା ମଣିଷ ।"

"ଭାରି କହିଲା ବାଲ—ଏମିତି ଠିକ୍ କରି ଆସେ···ଆଚ୍ଛା, ହଉ, ଦେଖିବା ଭାଇ ଆସନ୍ତୁ । କିଏ ଓଲଟା କିଏ ସିଧା ସବୁ ଜଣା ପଡ଼ିବ । ପାଠଶାଠ ତ ଚେନାଏ ନାହିଁ, ସି···ଅକ୍ଷର ବବର୍ଜିତ, ପାଟିରୁ ଭଲ କଥା ବାହାରିବ କମିତି ! ଭଦ୍ର ଘରର ଝିଅ ହେଇଥିଲେ ସିନା ଭଦ୍ର କଥା ବାହାରନ୍ତା ।"

"କାମିନ ! ମୁଁ ସିନା ପାଠ ପଢ଼ିନ ହେଲେ ତମେ ତ ଏ୍‌ତ ପାଠ ପଢ଼ିଲଣି, ଆମ ଗାଁର ସବୁ ବୋହୂ ଝିଅଙ୍କଠୁ ବେଶୀ—କହୁ ନ ବୁଝି ବୋଉଙ୍କ କଥାରେ ମୋତେ ଚାଳ ଦେଇ କ ଲାଭ ପାଉଛ ?

"ନା···ଇଁ, ମୋ ବୋଉ ଗୋଟାପଣେ ବଣ୍ଟୁଆଟ ତମେ ତ ଗୋଟା ପଣେ ତୁଳସୀ । ତମର ତ ଶାଶୁ ବୋଲି ଖାତିରି ନାହିଁ, ତମକୁ ସେ ବୋହୂ ବୋଲି ମୁଣ୍ଡରେ ବସେଇବ କୋଉଥିପାଇଁ ?"

"କଲୋ ସେଡକ କ'ଣ ? ଦେଖନ୍ତୁ ନିଜକୁତ୍ର ପଦେ ଲେଖି ଆସୁନ ସ୍ତ୍ରୀ ତା ହାତରେ ଶଠି ଲେଖାଇ ମୋ ଘରର ସବୁ ବୁନିଆଦ ପଦାରେ ପକାଉଛୁ । ଆମ ସମସ୍ତଙ୍କ ବିପକ୍ଷରେ ତା ବାପ ମା ପାଖକୁ ଲେଖୁଛୁ । ସତେ ଯିମିତି ଏ ମୁଲକରୁ ତା ବାପ ଆସି ଆମକୁ ଉଠେଇ ଦବ ।"

"କଗୋ, ସଙ୍ଗାତ !

କଣ ହେଲାକ ? କାହା ଉପରେ ଏତେ ଗର୍ଜନ ତର୍ଜନ ମ ?"

"ହଁ... ମୋ ଗର୍ଜନଟା ତମ ଆଖିକୁ ଦିଶିଲା ଆଉ ତା ଗୁଣଗ୍ରାମ କିଛୁ ଦିଶିଲାନି !"

ଆଚ୍ଛା କଥା "ମୁଁ ପରି ସେଇ କଥା ପଚାରୁଚି ।"

"ଆଲେ, ଭାଗ୍ୟକୁ ନିନ୍ଦିବନି ତ ଆଉ କାହାକୁ ନିନ୍ଦିବ ? କୋଉ ଜନମରେ କି ପାପ କରିଥିଲି ଯେ ଏ ଅଲକ୍ଷଣୀଟା ମୋ କରମକୁ ଜୁଟିଲି । ମୋ କୁଳଗୋତ୍ର ସବୁ ବୁଡ଼ିଲା ତା ଲଗି । ହେଲେ ତମ ବୋହୂଟିମାନ କାନର ସୁନା । ତମ ଘରେ କ'ଣ ବୋହୂପାଇଁ ଇମିତି ହାଟ ବସୁଛି ? ଏଇ ଦେଖନ୍ତୁ, ଆମ ଘରେ ନଇତି ହାଟ ନିଇତି ନଇତି ପାଲି ।"

"କଲେ ! ପୁଙ୍ଗେ ନୁହେଁ କି ପାଞ୍ଚଟା ନୁହେଁ, ବୋହୂ ବୋଲି ଗୋଟାଏ, ଚଳେଇ ନେଉନ୍ତୁ । ବନସ୍ତରୁ ଧରି ହେଲି ପରି ଆଇଚି । ମଙ୍ଗେଇ ନେଲେ ସିନା ପୋଷା ମାନିବ । ଇମିତି ସବୁବେଳେ ପାଟିତୁଣ୍ଡ କଲେ ଚଳିବ କମିତି ? ଭଲ ହେଉ ମନ୍ଦ ହେଉ, ଯେତେବେଳେ ଦେଖି ଶୁଣି ବୋହୂ କରିଛୁ ତାକୁ ନେଇ ଚଳିବାକୁ ପଡ଼ିବ । ଆଉ କଂସା ପିତ୍ତଳ ନୁହେ ଯେ ବଦଳାଇ ଦେବା ।"

"ହଁ...ହଁ...ଥାଉ ତମର ଭଦ୍ରଲୋକ ।"

"ସଙ୍ଗାତ ବୋଲି କିଛୁ ନ କହିବାରୁ ବଡ଼ି ବଡ଼ି କଥା କହୁଚ ନା କ'ଣ ? ଦୋଷ ଖାଲି କ'ଣ ମୋର ଆଉ ତା'ର ନାହିଁ ? ଶାଶୁ ବୋଲି ତ

ତାର ଟିକିଏ ବି ଖାତିର ନାହିଁ । ପୁଣି ଏଥିରେ ମୁହେଁ ମୁହେଁ ଜବାବ ଫୋପାଡ଼ ହବ, କହିଲେ ସବୁ ଦୋଷ ମୋର !"

ଏତିକିବେଳେ ମାଧବୀ ମୁଣ୍ଡରେ ଗୋଟିଏ ସରୁ ଓଢ଼ଣା ଟାଣି ଆଖି ଲୁହକୁ ଲୁଗା କାନିରେ ପୋଛୁ ପୋଛୁ ଆସି ଦୁହିଙ୍କର ପାଦ ତଳେ ପ୍ରଣାମ ବାଡ଼ିଲା । ଉଠି ଛିଡ଼ା ହେଲା ଘରର କାନ୍ଥକୁ ଆଉଜି ।

"ଅହ୍ୟ ସୁଲକ୍ଷଣୀ ସୌଭାଗ୍ୟବତୀ" କହି କହି କୋଳକୁ ଟାଣି ନେଲେ ମାଧବୀକୁ ସନା ବୋଉ । ଲୁଗା କାନିରେ ମାଧବୀର ମୁହଁ ପୋଛୁ ପୋଛୁ କହିଲେ, "ସଙ୍ଗାତ, ହେଲେ ତୁ ସବୁ ଭୁଲିଯା । ଦେଖିଲୁ କେଡ଼େ ସୁନ୍ଦର ଗୁନ୍ଦ ଉଦିଆ ମୁହଁ । କର କପାଳରେ କେତେ ଶୁଭ ଲକ୍ଷଣ ସବୁ ଭରିଛି । ତୁ ତାକୁ ଅଲକ୍ଷଣୀ କହୁଛୁ ? ତୋ କୁଳ ଉଜ୍ଜ୍ୱଳ କରି ଦେବ ଲେ ସଙ୍ଗାତ ଉଜ୍ଜ୍ୱଳ କରିଦେବ । ତୋର ତିନି ପୁରୁଷ ହେଲା କୁଳରେ ଗୋଟିଏ ଗୋଟିଏ ଅଣ୍ଡିରା ପୁଅ—ଆଉ ସବୁ ଝିଅ । ଦେଖିବୁ···କେତେ ନାତି ଧରିବୁ ଏଥର । ତା ହାତଟା କେତେ ବଡ଼ିଆ ହାତ ମ !"

"ଆଲେ ସଙ୍ଗାତ !

ସତ କହୁଛୁ ନା···ଟାହି ଟାପରା କରୁଛୁ ମ । ଦେଖିଲୁ, ଦେଖିଲୁ, ଭଲ କରି ହାତଟା ଦେଖିଲୁ । ସତରେ କ'ଣ କୁଳ ଉଜ୍ଜ୍ୱଳ ହବ । ତୁ ତାକୁ ମଝିରେ ମଝିରେ ଆସି ବତେଇ ଦେଉଥିବୁ ସଙ୍ଗାତ ! ସେ କ'ଣ ତୋ ବୋହୂ ନୁହେଁ ? ହେଲେ ଶାଶୁକୁ ସବୁବେଳେ ଅସନ୍ତୁଷ୍ଟ କରି ଭଲ ହବ ? ମୋ ପାଦୁକ ପାଇବନି । ମୋ ଉଚ୍ଛିଷ୍ଟ ଖାଇବନି । ମୋ କଥା ଶୁଣିବନି । ସବୁବେଳେ ଗାରୁ ଗାରୁ ମାରୁ ମାରୁ, ଏଇଟା କ'ଣ ଗୋଟାଏ କଥା ?"

"ନା···ନା ସଙ୍ଗାତ ! ଆମ କାଳ କଥା ବୋହି ଗଲାଣି । ଆମେ ସିନା ଶାଶୁଙ୍କ ପାଦ ଧୋଇ ପାଦୁକ ପାଉଥିଲେ, ତାଙ୍କ ଅଇଁଠା ଖାଉଥିଲେ, ଆଜିକାଲି ସେ ସବୁ ଚଳିବନି । ସେଟା କଣ ଭଲ କଥା ସଙ୍ଗାତ ? ହାଦରେ

ଟେଳେ ମଇଳା, ଛେପ, ଖଙ୍କାର ବାଜୁଛି । ତାକୁ ଧୋଇ ସେ ପୁଣି ପିଇବ । ତା ଦ୍ୱାରା ଭଲ ରହିବନି ? ଆମେ ଯେତେବେଳେ ରୋଗ ବାଧାର ଭିତର କଥା ଜାଣି ନ ଥିଲେ ବୋଲି ସିନା ସିମିତ କରୁଥିଲେ । ଆଜିକାଲି କୌଣସି ଝିଅ ବୋହୂ ତା' କରିବେନି ।" "ଓଃ ! ତା' ହେଲେ ଅସଲ କଥାଟା ଏଇଠେ । ମୁଁ ଭାବିଲି ଆଜି କଣ କିଛି ହେଇଗଲା ।"

"ହଁ...ହଁ ଏତେବେଳେକେ କହିଲୁ ସୈନ୍ଧବ ଲୁଣ । କାଲେ ମୁଁ କଣ ତାକୁ କହୁଛି ପାଦୁକ ପାଇବାକୁ ନା ମୋ ଅଇଁଠା ଖାଇବାକୁ । ଯା'ର ଭକ୍ତି ଯେଉଁଠେ ତାର ଠାକୁର ସେଉଁଠେ ।"

"ମାଲୋ, ଯା ଘର କାମରେ ଲାଗିବୁ । ମନେରଖ, ତୋ ଶାଶୁଟା ଖୁବ ଭଲ ଲୋକ । ପାଟିଟା ଟିକିଏ ଖୋଲା ହେଲେ କ'ଣ ହବ; ଛନ୍ଦ କପଟ, ଛଳ ସେ କିଛି ଜାଣେନା । ଏ ଖଣ୍ଡ ମଣ୍ଡଳରେ ତାର ନାଁ ନ ଜାଣେ କିଏ ? କେଉଁ ବୋହୂର ଏନ୍ତୁଡ଼ିଶାଳରେ ପଶିନି, କେଉଁ ପିଲାର ବାଛେରି ଝାଡ଼ା, ଅଳତ ଘା, ପେଟ ବଥା, ଆଖି ଧରା ସେ ଭଲ ନ କରିଛି ! ବାଞ୍ଝ ମାଇପିଙ୍କୁ ପିଲା ପିଲିକା ଦେଇଛି । ତାର ସିନା ଅକ୍ଷର ଜ୍ଞାନ ନାହିଁ ହେଲେ ପୁରାଣ ଭାଗବତ ଜୋଇଲା ତା ମୁହେଁ ମୁହେଁ । ଚିଠିଟା ଆଖି ଆଗରେ ଥୋଇ ଦେଲେ, ଅକ୍ଷର ଗୁଡ଼ାକୁ ଚୁହିଁ ସେ ଅନ୍ଦାଜରେ ଯାହା କହିଦେବ, ପଢ଼ିଲାବେଳେ ଠିକ୍ ସେଇଆ ଆସିବ । ଏପାଖ ନାହିଁ କି ସେପାଖ ନାହିଁ । ଗୁଣି ଗାରେଡ଼ିରେ ବି କମ୍ ନୁହେଁ । ଗୁଣି ବିଦ୍ୟାରେ ସେ ଆଛା ଗୁଣିଆକୁ ପାଣି ପିଆଇ ଦେବ । ଦେଖ୍, ସାବଧାନ; ଇମିତିଆ ଶାଶୁକୁ ବେଖାତିର କରିବା ଭଲ କଥା ନୁହେଁ । ଶାଶୁର ମନନେଇ ଚଳିବୁ । ସେ ତୋର ଇଷ୍ଟ, ସେ ସବୁ ।"

"ହଁ, ସେଇ କଥା ହେ...ଭଲ କରି ତାକୁ ବୁଝା ସଙ୍ଗାତ ! କଉ ଆମେ ପାଠ ପଢ଼ିନୁ ବୋଲି କେଉଁ ଗୁଣରେ କମ୍ ? ତମର ତ ନା ପାଠ ନା ଶାଠ । ମୁହଁ ଭୁରୁଡ଼ୁ ବେଶି । ଚିଠି ପଦ ଲେଖି ନ ଆସୁଛି ତେବେ ଘର କଥା ବାହାରେ ପକାଉଛୁ କାହିଁକି ? ବାପକୁ କହିଲୁନ ଦ

ଅକ୍ଷର ପଢ଼େଇଥାନ୍ତା । ତୁ ମୋର ଇମିତି ଗୁଣବନ୍ତି ବୋହୂ ଯେ ମଲାବେଳେ-ବି ପୁଣି ଭାଗବତ ପଦଏ କାନରେ ପକେଇବୁନି । ହେଇ ଦେଖେ, ମୋ କାମିନୀ ଆଉ କମଳୀ କମିତି କୋଇଲି ପରି ରଡ଼ୁଛନ୍ତି । ମୋ ସାଙ୍ଗେ ତ ଲଗିଲୁ ହେଲେ ନଣନ୍ଦ ଗୁଡ଼ାକୁ ହାତରେ ରଖ । ସେମାନେ ତୋର ଆଖି ଖୋଲି ଦେବେ । ତା' ବି ହେଲନି ।

"ସଙ୍ଗାତ ଲୋ ! ଯାଉଛି···ଯାଉଛି !!

ବୋହୂଟାକୁ କିଛି ସିମିତି କହିବୁନି । ପିଲା ଲୋକ···ଶିଖୁ ଶିଖୁ ଶିଖିବ । ସେ ଦିନ କ'ଣ ପିଠାଟାଏ ଚୁଲିମୁହରେ ବୁଲେଇ ଜାଣିଲାନି ବୋଲି, ତୁ ପରା ତା ହାତଟାକୁ ତତଲା ଚୁଲିମୁହରେ ଘଷି ଦେଲୁ । କହିଲୁ 'ଇମିତି ଠ ପରି ବୁଲାନ୍ତୁ ।' ଆଚ୍ଛା କହିଲୁ, ଏଇଟା କ'ଣ ଗୋଟାଏ କଥା । ଏ ଯୁଗ କେତେ ବଦଳିଲାଣି, ଅଥଚ ତୋର ସେଇ ପୁରୁଣା ଢଙ୍ଗ ବଦଳୁନି । ହଉ···ଆ···ମୁଁ ଯାଉଛି ।"

ଏତିକିବେଳେ ଓଢ଼ଣା ଉହାଡ଼ରୁ ସକ୍ ସକ୍ ଶବ୍ଦ ଶୁଣାଗଲା । ମାଧବୀ ଧୀରେ ଧୀରେ ପ୍ରବେଶ କଲା ଘର ଭିତରକୁ । ଠିକ୍ ଏକ ଚଳନ୍ତି ପ୍ରତିମା ପରି । ଶାଶୁ ସିମିତି ପାଟିଭୁଣ୍ଡରେ ଗାଁ ଉଚ୍ଛୁଳାଉ ଥାଏ ।

"ହାତଟା ଘଷି ଦେଲି ଯେ କ'ଣ ହେଇଗଲା । ମାଷ୍ଟର କ'ଣ ପିଲାର ହାତ ଧରି ଅକ୍ଷର ଶିଖାଉନି ! ତା ମା'ତ କିଛି ଶିଖେଇନି ଯା ବୋଲି ମୁଁ ତାକୁ କିଛି ଶିଖେଇବିନି ? ଯା···ଯା···କହୁଛି ।"

ମାଧବୀର ଏହା ନିତିଦିନିଆ ଦିହସୁହା ଘଟଣା । ବୁଦ୍ଧିମନ୍ତ ବାଳଅନ୍ତା ବି: ଡ଼ି: ଓ: ଅଫିସ୍‌ର କିରାନି । ସ୍ତ୍ରୀ ପ୍ରତି ତା'ର ଅନୁରକ୍ତି ଥିଲେ ବି ମା'ର ପ୍ରରୋଚନାରେ ସମୟେ ସମୟେ ସେ ବଡ଼ ଭୟଙ୍କର ହୋଇ ଉଠେ । ଦୁଇ ନଣନ୍ଦ, କାମିନୀ ଓ କମଳା । କାମିନୀ ଗୋଟାପଣେ ମା'ର । ଭାଉଜର ଛୁଇବାଇ ଲେଞ୍ଜାର ଦେଖେନି । କମଳା ବୟସରେ ଶ୍ରେଷ୍ଠ । ଭାଉଜ ପ୍ରତି ତାର ଦରଦ ଅଧିକ । ମା ଭୟରେ ସେ ମାଧବୀଠାରୁ

ଦୂରେଇ ଦୂରେଇ ରହେ, ହେଲେ ବିପଦ ଆପଦରେ କମଳା ବହୁତ ସାହାଯ୍ୟ କରେ ମାଧବୀକୁ । ମା'ର ସମସ୍ତ ଚକ୍ରାନ୍ତର ଖବର ଦିଏ କମଳା, ଭାଉଜ ପାଖରେ ।

"ଭାଉଜ···ଭାଉଜ !"

ନାନୀ ଆଉ ବୋଉ ଗଲେଣି ପୋଖରୀକୁ ଗାଧୋଇବାକୁ ?"

"ଆଉ ତମେ ?"

"ମୁଁ ଠକ ଦେଇ ପଳେଇ ଆସିଲି । ମା ବି କହିଲା, 'ତୁ ଘରେ ଥା, ଦେଖୁଥିବୁ—ଜନଷ ପତର ଯିମିତି ଅତର ପତର ନ ହୁଏ ।"

ମାଧବୀ କମଳୀକୁ କୋଳକୁ ନେଇ କହିଲା, "ସତରେ କମ, ତମପରି ଏତେ ଭଲ ପିଲା ଆଉ ନାହାନ୍ତି । ଆଚ୍ଛା କମ, ବୋଉ ତ ସବୁବେଳେ ଏ ଭାଉଜଟା ଉପରେ ଗରଗର । ଆଚ୍ଛା କହିଲ, ଭଲ ଭାଉଜଟିଏ ଘରକୁ ଆଣିଲେ କମିତି ହୁଅନ୍ତା ?"

"ଭାଉଜ ମୋ ମା'ପାଇଁ ଭଲ ଭାଉଜ ଦରକାର ନାହିଁ । ତାପରି କଳହୁଡ଼ୀ ଭାଉଜଟାଏ ହୋଇଥିଲେ ଠିକ୍ ହୋଇଥାନ୍ତା । ଏ ଭାଉଜ ! ଶୁଣ, ଚୁପ୍ କରି କହିବି—ପାଖକୁ ଆସ । ମୋ ବୋଉ ନୁହେଁ, ବହୁତ ଔଷଧ ଜାଣିଛି । ମଲ୍ ମଣିଷକୁ ଖିଆଇଁ ଦେବା ଲୋକ । ତା ସାଥିରେ କେତେବେଳେ ହେଲେ ଲାଗିବନି । ସେ ଯାହା ସାଥିରେ ଲାଗେନା··· ତାର ଚେର ନ ଉପାଡ଼ିବା ପର୍ଯ୍ୟନ୍ତ ତା ମନରେ ଶାନ୍ତି ନ ଥାଏ । ତାକୁ ଗାଁର ସଭିଏଁ ଡରନ୍ତି । ଭାଇ ତା କଥାରୁ ଗାରେ ବି ଡେଇଁବେନି ।"

"କମ···ମୋ ସୁନା ଭଉଣୀଟା, ତମେ ମୋର ସାଥି । ତମେ ଥିଲାଯାଏ ମୋତେ ଟିକିଏ ଚଳେଇ ନେବ । ମୁଁ ଭାବୁଚି ତମେ ଚାଲିଗଲେ ମୁଁ ଏମାନଙ୍କ ଦାଉରୁ ବଞ୍ଚି ପାରିବିନି ।"

"ଏ...କଣ କହୁଛ ମ ? କିଛୁ ବ୍ୟସ୍ତ ହୁଅନ୍ତ । ସେ ତମ ବିପକ୍ଷରେ ଯେତେବେଳେ ଯାହା କରିବ ମୁଁ ଜାଣିଲେ ଆଗରୁ କହିଦେବି ଭାଉଜ......ବାକି ଗୋଟିଏ କଥା, ଭାଇଙ୍କୁ କେବେ ହେଲେ ବିରକ୍ତ କରିବନି ।"

"ମୁଁ କଣ ବିରକ୍ତ କରୁଅଛି କମ ?"

"ଓହୋ; ତମେ ସାବଧାନ ହେବାକୁ କହିଲି । ଭାଇ ବି ବୋଉକୁ ଡରନ୍ତି ।"

"ଆଚ୍ଛା, କମ ! ସତ କହିଲ ବୋଉ ମୋ ଉପରେ ଇମିତି ବିରକ୍ତ ହେବାର କାରଣ କଣ ?"

"କାରଣଟା ଆଉ କ'ଣ, ତା ପ୍ରକୃତି ସିମିତି ଭାଉଜ ! ସେ ଠିକ୍ କରିଥିଲା ଆଉ ଗୋଟାଏ ଜାଗାରେ ଭାଇଙ୍କୁ ବିଭା ଦେଇଥାନ୍ତା । ବହୁତ ଧନ ଦରବ ଜମିବାଡ଼ ମିଳିଥାନ୍ତା । ଭାଇ ରାଜା ହେଲେନି ।"

"କାହିଁକି ?......ଭରି ଭଲ ହୋଇଥାନ୍ତା କମ ! ନାହିଁ କଲେ କାହିଁକି ? କେତେ ଧନ ଦଉଲତ ଆସିଥାନ୍ତା, ଘର ପୂରି ଉଠିଥାନ୍ତା । ମୋ ପରି ଗରିବ ଝିଅଟାକୁ ଆଣିଲେ କାହିଁକି, ଏତେ ମନସ୍ତାପ କରୁଛନ୍ତି କାହିଁକି ?

"ମୋତେ ନୁହେଁ,—ମୋର ଟିକିଏ ବି ମନସ୍ତାପ ନାହିଁ ।"

ଚମକି ପଡ଼ିଲେ କମଳୀ ଓ ମାଧବୀ ।

ପଛକୁ ଫେରି ଚାହିଁଲେ । ଆଖି ପିଛୁଳାକେ ମାଧବୀ ଘର ଭିତରକୁ ଚାଲିଗଲା । କମଳୀ ନାକ ସୁକୁସୁକୁ କରି କହିଲା, "ତମେ ଭାଇ ଭାରି ଜଣେ, ପାଦ ଚପି ଚପି ଲୁଚି ଲୁଚି ଆସି ସବୁକଥା ଶୁଣିଛ ହେଲେ ମନେ ରଖ, ମାଆକୁ କହିବ ନା ସେଇଦିନ ବର୍ଜିବ ମୁଁ କଣ !"

"ତୁ ତ କମଳୀ...ତୁ ଆଉ କଣ ?"

"ହେଲେ ତତେ କୋଉଦନୁ ଏ ସ୍ୱକର ଖଣ୍ଡିକ ଭଜନ ପାଖେ ମିଳିଲଣି ? ଏଥିପାଇଁ କିଛି ମିଳୁଛି କି ନାହିଁ...ନା ମାଗଣା ମାଗଣା ?"

ମାଧବୀ ପାଣି ଡ଼ାଲ ଥୋଇ ଦେଇ ଓଢ଼ଣୀ କାଣି ଟିକଏ ଦୂରରେ ଛୁଡ଼ାଦେଲ । ଅଧର ତଳେ ହସର କ୍ଷୀଣ ରେଖା । । ସତେ ଯିମିତି କଳା ମେଘ ତଳେ ବଦୁଲେଖା ।

"କଉ ମାଧବକା ! ଏ ଜୀବଟିକୁ କୋଉଦନୁ ହାତେଇଲଣି ? କିଛି ପାରଶ୍ରମିକ ଦଉଚ ନା ନାହିଁ ?"

"ଭାଇ, ବହୁତ ବହୁତ ମିଳୁଚ, ମା'ର ଗାଳ, ସନ୍ଦେହ, ଡମର ଛାଗିଦା ଭଜଜଙ୍କର ଲୁହ...କୋହ । ଆଉ କ'ଣ ମିଳନ୍ତା ?"

"ଗୋଟିଏ କଥା କମଳୀ, ଏ ବ୍ୟବସାୟ ଛାଡ଼ ଦେ । ବୋଉ ଟିକଏ ସୁବକ ପାଇଲେ ତୋ ଅବସ୍ଥା ବ ରହିବନ । ତୁ କଣ ଭାବୁଛୁ ଝିଅ ବୋଲି ସେ କିଛି ଭାବବ, ସେକଥା ନୁହେଁ । ତା' ରାଗ ପାଖରେ କେହି ଛାଡ଼ ପାଇବେନ । ଆଚ୍ଛା ବୋଉ କୁଆଡ଼େ ଯାଇଛି ?"

"ଗାଧୋଇବାକୁ ।"

"ଜାମିନା ?"

ସେ ମଧ୍ୟ ଯାଇଛି । ଯାଇ, ବୋଉକୁ ଡାକ ଦେଉଚ ।'

ଏତିକ କହି ଚାଲଗଲ କମଳୀ । ମାଧବୀ ଆଖିର ଲୁହ ଓ ବୁକୁର କୋହ ଭିତରେ ସତେ ଯେପରି ମନର କେତେ ଅସୁମାର ଯନ୍ତ୍ରଣା ପ୍ରକାଶ କଲ ନୀରବରେ ! ବୁଦ୍ଧିମନ୍ତ ପିଣ୍ଡାଟା ଉପରେ ବସିଛି ଚିନ୍ତାମଗ୍ନ ଭାବରେ ସତେ ଯେମିତି କ'ଣ ଗୋଟାଏ ଘଟିଛି ।

ଏତିକବେଳେ ଆସି ପହଞ୍ଚିଲେ ବୁଦ୍ଧିମନ୍ତର ମା । ହାତରେ ପାଣି ଡାଳ । ମୁଣ୍ଡରେ ତୁଳସୀ ଜଟା, କପାଳରେ ଚନ୍ଦନ । ଗାଧୋଇ ସାରି ପାଖ

ମନ୍ଦିରରେ ସେବାପୂଜା କରି ଫେରିଛନ୍ତି । ବୁଦ୍ଧିମନ୍ତ ନମସ୍କାର କଲା । ପୁଅକୁ ଦେଖିଲାକ୍ଷଣି ହସି ହସି କହିଲେ—

"ହେଇ···ତ, ମୋ ବାପା ଆସିଲାଣି । ମୁଁ ଠିକ୍ ଜାଣିଥିଲି, ତୁ ଆଜି ଆସିବୁ ବୋଲି, ମୋ ମୁହେଁ ମୁହେଁ ନାଚୁଥିଲୁ । ହାତରୁ ତିନିଥର ପାନିଆ ଖସିଥିଲା ।"

"କିଲୋ, ଅଲେଇ ଘର ଝିଅ ! ପୁଅ କେତେବେଳୁ ଆସି ଦାଣ୍ଡଟାରେ ବସିଛି । ମୁଁ ନାହିଁ ବୋଲି ତୁ ପାଣିଟିକେ ଦବୁନ୍, ଜଳଖିଆ ଟିକିଏ ଦବୁନ୍, ସବୁଦିନେ ମୁଁ କଣ ପାଖରେ ଥିବି ?"

"ହଁ ବୋଉ, ସେ ପାଣି ଦେଇଛି, ମୁଁ ଟିକିଏ ବାହାରେ ପବନ ଖାଉଥିଲି ।"

ଘର ଭିତରେ ପଶିଲାକ୍ଷଣି ମାଧବୀକୁ ଦେଖି ବାରୁଦ ଗଦାରେ ନିଆଁ ଲାଗିଲା ପରି ଚହଁକି ଉଠିଲେ ବୁଦ୍ଧିମନ୍ତର ମା ।

"ହେ···ଇ···ଲୋ ! ପୁଣି ଗୋଟାଏ କଣ କମିଆ କଲାଣି । ସକେଇର କମ୍ ଛଟକ ନୁହେଁ । ପୁଅଟା ଦାଣ୍ଡରୁ ବାଟରୁ ଘରକୁ ନ ପଶୁଣୁ ସବୁ ଆରମ୍ଭ କରି ଦେଲାଣି । ଆଚ୍ଛା କହିଲ, ଏଥିରେ କାହା ମନ ଘରକୁ ଆସିବାକୁ ରୁହିଁବ ? ଆ ବାପା, ଘରକୁ ଆ । ଘରବାଲେ କ'ଣ ହେବ । କାଳ ସାପକୁ ତ ବେକରେ ଗୁଡ଼ାଇଛୁ, କଣ କରାଯିବ ?"

"ଆଚ୍ଛା ବୋଉ ! ତୁ କ'ଣ ବୁଝିଲୁ ଯେ ଏତେ କଥା କହିଲୁ ! ମୁଁ ତ ଟିକିଏ ଝାଳ ମାରୁଥିଲି, ସେ'ତ ପାଣି ଦେଇଛି, ଦି'ଥର କହିଲାଣି ଗୋଡ଼ ଧୋଇବାକୁ । ତାପରେ ଯେ ତ ତୋ ବିଷୟରେ ମୋତେ କିଛି କହିନ ।"

"ତମେ ଭାଇ କିଛି ଜାଣିନ । ମା'କୁ ତମେ କିଛି କହି ପାରିବନ । ସେ ଯାହା କହୁଛି, ତାହା ଠିକ୍ । ତମେ ଭାଉଜଟିର ଗୁଣ ଜାଣୁନ ବୋଲି ସିନା ଇମିତ କହୁଛ; ହେଲେ ଆମେ ଯାହା ଦେଖୁଛୁ ଦାନ୍ଦ ସହିବନ ।"

"ଆଜ୍ଞା କାମିନି !"

"ତୁ ବି ତା' ସାଥିରେ ! ଓଃ, ତା'ହେଲେ ମହାଭାରତ ଯୁଦ୍ଧ ଚାଲିଛି । ଗୋଟେ ପଟେ ତମେ ଯମଦୂତ—ଆଉ ଗୋଟେ ପାଖେ ସେ । ଆଚ୍ଛା କହିଲୁ ତୋ ଭାଉଜର ଅପରାଧ କ'ଣ ?"

"କହିବନି—କହିଲେ ଏ ଘରେ ରହିବନି । କାହିଁକି ସେ ବୋଉକୁ ଯାହାମନ ତାହା କହିବ ? ତା'ର କଣ ବୋଉ ଖାଏ ନା ଧାରେ ? ତମର ଯଦି ଏତେ ଦରଦ ତା'ହେଲେ ଭାଉଜକୁ ନେଇଯାଅ । ଗୁଣଗ୍ରାମ ବଳେ ଜାଣିବ । ଆମେ ଯିମିତି ଚଳିବୁ···ଚଳିବୁ ।"

"କାମିନି, ଆଗପଛ କଥା ବିଚାର କରି କହୁଛୁ ତ ? ବୋଉଟା କଣ ତୋର ଏକୁଟିଆ—ମୋର ନୁହେଁ କି ତୋ ଭାଉଜର ନୁହେଁ ?"

"ନୁହେଁ ଆଉ କଣ । ହେଇ ଦେଖୁନା' ଯୋଗ୍ୟପୁଅ ଷାଠିଏ ସତୁରୀ ବର୍ଷର ମା'କୁ କେଡ଼େ ନାଲି ଆଖି ଦେଖାଉଛନ୍ତି ।"

"ହଁ, ଲେ···ମା । କହୁ···କହୁ । ଧରମ ତାକୁ ପାରି ଯାଉ । ତେତିଶି କୋଟି ଦେବତା ପୂଜାକରି ପୁଅ ପାଇଥିଲି ସେ ସେ ହେଲା ଶତ୍ରୁ । ଦଶଦିଗ ପାଳକୁ ସାକ୍ଷୀରଖି ବୋହୂ ଆଣିଥିଲି ସେ ସେ ହେଲା ଡାକୁଣୀ । ଯଦି କଳି ଯୁଗରେ ଠାକୁରେ ଥିବେ—ମୁଁ ଯଦି ପ୍ରକୃତରେ ଗର୍ଭଧାରିଣୀ ମା ହୋଇ ଥିବି, ତା'ହେଲେ ମୋ ଅସନ୍ତୋଷରେ କୂଳ ଉଜ୍ଜ୍ୱଳ ହେବନିରେ···ଉଜ୍ଜ୍ୱଳ ହେବନି । ଆରେ ତୋର ଏଡ଼େ ବଢ଼ିପ । ମାଇପକୁ ନେଇଚଳିବୁ ? ହେଇଟି ଦେଖୁନୁ ବାଛି ବାଛି ଉର୍ବଶୀକୁ ବାହା ହୋଇଥିଲୁ ସେ ଘରେ କି ପଶୁଣୁଁ ମୁଣ୍ଡରେ ଚଢ଼ିଲା । ଯବାବ କଲା ତା ବାପ ହାଣ୍ଡି ଛଡ଼ା ଦେବାକୁ ହେଲା-ବେଳକୁ ଉଖୁଡ଼ା ବୋଝେ ବି ଦେଇନି । କାନରେ ନାକରେ ସୁନା ନାଁରେ ପିତଳ କେଇଟା ଝୁଲାଇଛି । ମୁଁ ଯୋଉଟା ଠିକ୍ କରିଥିଲି ଗନ୍ଧେଇଲା··· ଫଳ ଭୋଗୁଚି କଏ ?"

'ବୋଉ, ଏଥିରେ ତାର କ'ଣ ଦୋଷ ? ତୋ ପସନ୍ଦ ଯାହାକୁ ଥିଲା ମୋ ମନ ତ ମାନିଲାନି, ଏଥିଲାଗି ସେ ଦଣ୍ଡ ପାଇବ କାହିଁକି ? ଯାହା

କହିବାର କଥା ମୋତେ କହ । ଆଚ୍ଛା ବୋଉ, ଆମର ତ ଧନ ଦରବ ପର ଲୋକେ ଖାଇ ଯାଉଛନ୍ତି ତାଙ୍କ ଧନରେ ଆମ୍ଭେ କୋଉ ରଜା ପାଲଟିଥାନ୍ତେ ? ଗଲାକଥା ତ ଗଲାଣି, ଆଉ କଣ ଆସିବ ?"

"ଆସିବ ନ ?

ଅଲବତ୍ ଆସିବ । ତୁ ଟିକଏ କର ଗୁଡ଼ଦେଲୁ, ଦେଖିବୁ କମିତ ଧନ ଦରବ ନ ଆସିବ ! ଦୁନିଆରେ ତ ପୁଣି ମୁଁ ଦାଣ୍ଡ ସୁନ୍ଦର ବୋଲି କହୁଛୁ । ଆରେ, ଧନ ଦରବ ମୁଁ ଗଲାବେଳେ ମଣାଣିକ ନେଇ ଯିବନି । ତୋ ପାଇଁ···ତୋ ପିଲାଙ୍କ ପାଇଁ ! ତୋ ବାପ ମୋ ପାଇଁ ଯଥେଷ୍ଟ ରଖି ଦେଇ ଯାଇଛି । ବାକି ଝିଅ ଦଟା । ବଡ଼ଟା ତ କହିଲାଣି ବାହା ହବନି । ନର୍ସ ଟ୍ରେନିଂ ଯିବ ଏଇ ମାସରେ । ସାନଟା ତ ପଢ଼ୁଛି, ତା ପଢ଼ା ସରିଲା ପରେ ମୁଁ ଥିଲେ ତ ହାତକୁ ଦି'ହାତ କରିଦେବି । ନ ଥିଲେ ତୋର ଇଚ୍ଛା ହେଲେ ଯାହା କରିବୁ କରିବୁ ନ ହେଲେ ତା ଆଖି ତ ଫିଟିଛି ସେ ତା ବାଟ କରି ପେଟ ପୋଷିବ । ମୋ ଝିଅକୁ ତୁ ଡରଉଚୁ କଣ ମ ?"

"ଆଚ୍ଛା ବୋଉ, ମୁଁ ତ କହୁଛି ମୋର ଧନ ଦରବ ଦରକାର ନାହିଁ । ମୋତେ ଟିକଏ ଶାନ୍ତି ଦେ ।"

"ମୁଁ ଶାନ୍ତି ଦେଉନି ?···

ଆରେ ମୁଁ ଶାନ୍ତି ଦେଉନି ? ଗଲୁ ତୋ ଭାରିଯାକୁ ନେଇ ! ଯୋଉଠି ଶାନ୍ତି ପାଇବୁ ସେଠିକି ଯା । ତୁ କଣ ଭାବୁଚୁ ତୋ ହାତକୁ କ ତୋ ସ୍ତ୍ରୀ ହାତକୁ ଅନେଇବି ? କସ୍ମିନ୍ କାଳେ ଏକଥା ହବନି ।"

"ଆଚ୍ଛା ଭଲ କଥା ବୋଉ, 'ବହୁତ ଶାନ୍ତି ଦେଲୁ ; ଢେର୍‌ଢେର୍ ଖାଇଲି, ଯାଉଛି । ଭାବ ନେବୁ ତୋ ପୁଅ ମରିଛି କମ୍ବା ଜନମ ହୋଇନି ମୁଁ ଚଲି ।"

ଆଖି ପିଛୁଳାକେ ବଜୁଳି ବେଗରେ ଆଗେଇଗଲା ବୁଦ୍ଧିମନ୍ତ । ଆଖିରେ ଆଖିଏ ଲୁହ । ବୁକୁରେ ସମୁଦ୍ରର କୋହ । ଗୋଡ଼ ଦୁଇଟାରେ ଅଜ

ଆସି ପହଞ୍ଚୁଛୁ ଅସରନ୍ତି ବନ । ଖୁବ୍ ଜୋରରେ ଆଗେଇଛୁ । ତାଠାରୁ ଆହୁରି ବେଗବାନ ହେଉଛି ତାର ମନଟା । ବିବେକ ଉଗ୍ରରୂପ ଧାରଣ କରିଛି । କହୁଛି, 'ଛି, ତୁ କଣ ପଳାତକ, ସାମାନ୍ୟ ପାରିବାରିକ କଳହରେ ଘର ଛାଡ଼ି ଚାଲି ଆସିଛୁ । କା' ଘରେ ବା କଳହ ନାହିଁ ? କିଏ ବା ଏଥିରୁ ନିସ୍ତାର ପାଇଛି ? ସ୍ୱୟଂ ଭଗବାନ ମଧ୍ୟ ନିଜ ଘରର ଦୁଃଖ କଥା ଭାବି ଭାବି ଦାରୁଭୂତ ପାଲଟି ଯାଇଥିଲେ । ଆସିଲୁ ତ—ଆସିଲୁ । ପୁଣି ନିଜର ପ୍ରାଣାଧିକା ପତ୍ନୀକୁ ଯାହା ଲୁହ ସାଗର ଭିତରକୁ ଠେଲିଦେଇ ଆସିଲୁ । ଏଇ କଣ ତୋର ପୌରୁଷ ? ଯଦି ଆସିଲୁ ତାକୁ ସାଥିରେ ଆଣିଲୁ ନାହିଁ ?'

ବୁଦ୍ଧିମନ୍ତର ସମସ୍ତ ବୁଦ୍ଧି ହଜିଗଲା ବିବେକର ଭର୍ତ୍ସନା ପାଖରେ । ସତରେ ବିଚାରୀ ମାଧବୀ ନିସ୍ପାପ । ତା'ର ବା ଦୋଷ କଣ ? ଏକମାତ୍ର ଦୋଷ ସେ ଗରିବ ଘରର ଝିଅ—ଧନ ଦରବ ଆଣିନି । ଆଉ ଗୋଟିଏ ଦୋଷ ପାଠ ପଢ଼ିନି, ନିରକ୍ଷର । ବର୍ତ୍ତମାନ କିନ୍ତୁ ସେ ଧନଶାଳୀ ଘରର ବୋହୂ । ସେ ତାକୁ ପାଖକୁ ଆଣି ପକାଇଲେ ମାସକ ମଧ୍ୟରେ ଅକ୍ଷର ଜ୍ଞାନ, ବହିପଢ଼ା, ପୁରାଣ ଭାଗବତ ପଢ଼ା ସବୁ କରାଇ ଦେଇ ପାରିବ । ସେ ଯିବ କୁଆଡ଼େ ? ସଂସାର ଯେତେବେଳେ ସୃଷ୍ଟି କରିଛି, ତାକୁ ବହନ କରିବା ପାଇଁ ଏ କାପୁରୁଷତା କାହିଁକି ? ମାନସିକ କ୍ଲୀବତା କାହିଁକି ? ସେ ଘରକୁ ଫେରିବ ?

ନା, ନା, ବାଲିଅନ୍ତା ଫେରିବ, ମନ ବଦଳିଗଲେ ଘରକୁ ଯିବ । ମା'ଟା ଆଉ କେତେଦିନ ଯେ ! କାଳକାଳକୁ ଷାଠିଏ ହୋଇ ତ ସାରିଲାଣି । ତାକୁ ଶେଷ ମୁହୂର୍ତ୍ତରେ ଅସନ୍ତୋଷ କରିବା ଉଚିତ୍ ହେବନି । ଏ ବୟସରେ ପ୍ରକୃତି ତ ବଦଳିବନି । ମାଧବୀକୁ ବୁଝାଇ ଦେଲେ ହେଲା । ତେବେ କାମିନୀର ଏ ପ୍ରକାର ବ୍ୟବହାର ସୁନ୍ଦର ନୁହେଁ । ସାଂସାରିକ ସୁଖ ମୂଳରେ ସୁନ୍ଦର ସଂଯତ ଚଳଣି ବେଶି ଆବଶ୍ୟକ । ବୁଦ୍ଧିମନ୍ତ ଚାଲି ଆସିବା ପରର ପରିସ୍ଥିତି ଦୁଃଖପୂର୍ଣ୍ଣ କରୁଣ । ପାରି କାନ୍ଦି ଉଠିଛି ତାର ମା । କାନ୍ଦି ଉଠିଛି ମାଧବୀ । ଗାଁରେ ଚହଳ ପଡ଼ିଗଲା । ସେ ଏକା ଏକା ଘରୁ ଚାଲି ଯାଇଛି । କୌଣସି ଆକର୍ଷଣ ତାକୁ ଟାଣି ରଖି ପାରିନି ।

ମା'ର ଚିତ୍କାର ମଧ୍ୟରେ ମାତୃପ୍ରାଣର ବିଳାପ ଯେତିକି ଫୁଟିନି ତାଠାରୁ ଅଧିକ ଛୁଟିଛି ମାଧବୀ ଉପରେ ଗାଳିର ଲମ୍ବା ସ୍ରୋତ ।

"ଅଲକ୍ଷଣୀ ଲୋ...ମୋ ପୁଅକୁ ଖାଇଲୁ ଲୋ !

ସେ ତ ଗଲା, ତୁ ରହିଗଲୁ କାହିଁକି ? ଘରେ ପାଦ ନ ଦଉଣୁ ପୁଅଟାକୁ ଦାଣ୍ଡକୁ ଛଡ଼ି ଦେଲୁ ! ଅଲକ୍ଷଣୀ ଲୋ, ତୋର ଏତେ ଶୁମର ।"

ଗାଁ ଲୋକେ ଜମା ହୋଇଗଲେ । ସାଇ ମାଇପେ ବୁଢ଼ୀକୁ ବୁଝେଇଲେ । ସମସ୍ତେ ତ ତା' ଗୁଣ ଜାଣନ୍ତି କିନ୍ତୁ ତା ବିପକ୍ଷରେ ପଦେ କହିବାର ଶକ୍ତି କାହାର ନାହିଁ । ସେ ଅସଲ ଜଣେ । ପକ୍ଷେ ମାସ ପକ୍ଷେ ଶୀଆଁ ଇଲ୍ ବାଲ୍ । ଗୁଣି ଗାରେଡ଼ିରେ ପୋଖତ । ଯାହାକୁ ଗୁହିଁବ ତାକୁ ତଳିତଳାନ୍ତ କରିଦେବ ଗୁଣି ବିଦ୍ୟାରେ । ତା' ମୁହଁରେ ସମସ୍ତେ ମାଧବୀର ଦୋଷ ବାଛନ୍ତି । ତା'ପରେ ମାଧବୀକୁ କହନ୍ତି, "ମା ଲୋ, ସେ ଥିବାଯାଏ ତୋ ଭାଗ୍ୟରେ ସୁଖ ନାହିଁ...ଶାନ୍ତି ନାହିଁ । ସବୁ ଦୁଃଖ ସହିବାକୁ ପଡ଼ିବ । ଏ ଦିହଟା ନାନା ଦୁଃଖର ମଶାଣୀ ।"

ଏଥି ଭିତରେ ବୁଢ଼ୀ ଖବର ଦେଇଛି ସମୁଦୀ ଘରକୁ । ମାଧବୀର ବାପା ଆସି ତାକୁ ନେଇ ଯାଇଛନ୍ତି । ବୁଦ୍ଧିମନ୍ତ କିଛିଦିନ ପରେ ଦୁଇ ଗୁରିଥର ଆସିଛି ମାଧବୀ ଘରକୁ । ଏଥି ଭିତରେ ମାଧବୀ ପାଇଛି ମାତୃତ୍ୱ । ପୁତ୍ର ସନ୍ତାନ ଲାଭ କରିଛି ସେ । ବୁଢ଼ୀ ନାତିର ଜନ୍ମଦିନ ପାଳିବାକୁ ବରଷକ ପରେ ଆସି ମାଧବୀକୁ ନେଇଯାଇଛି । ମାସେ ଦୁଇମାସ ପରେ ବୁଢ଼ୀ ପୁଣି ତାକୁ ଘରକୁ ପଠେଇ ଦେଇ ଲୋକଙ୍କୁ କହିଛି, "ପିଲାଟା ଦିହରେ ଏ ଜାଗାର ପାଣି ଗଲାନି । ଏଠେ ବି କ୍ଷୀର ଟୋପାଏ ମିଳୁନି, ତା ଅଜାଘର ଗୋଟାଏ ଦୁହାଁଳୀ ଗାଈ ଅଛି । ଛୁଆ ସୁବିଧାରେ କ୍ଷୀର ପାଇବ ।"

ଘଟଣାର ଘୂର୍ଣ୍ଣିବାତ୍ୟା ମଧ୍ୟରେ କଟିଯାଇଛି ଦଶ ପନ୍ଦର ବର୍ଷ । ଏଥି ଭିତରେ ମାଧବୀ ତା' କୋଳକୁ ପାଇଛି ଆଉ ତିନୋଟି ସନ୍ତାନ ।

ଏହି ଦୀର୍ଘ ସମୟ ଭିତରୁ ବୋଧହୁଏ ମୋଟାମୋଟି ଦୁଇ ତିନିବର୍ଷ ଖାପଛଡ଼ା ଭାବରେ କଟିଛି ତା ଶାଶୁଘରେ ଓ ବାକିତକ ସମୟ ନିଜ ଘରେ । କେତେ ମାଡ ଗାଳି ଭର୍ତ୍ସନା ଭିତରେ ତାର ଶାନ୍ତିର ସଂସାର ଚୁରମାର୍ ହୋଇଛି ଚିରଦିନ ପାଇଁ ।

ଢାମିନୀ ନର୍ସ ହୋଇଛି । କମଳୀ ମଧ୍ୟ ପାଠ ପଢ଼ି ହୋଇଛି ଗୋଟିଏ ବାଲ୍ୱାଡ଼ି ସ୍କୁଲରେ ସେବିକା । ମାଧବୀର ସବୁ ପିଲାଗୁଡ଼ାକ ମା' ଥିବ ଛାଡ଼ିବା ପରେ ବୁଢ଼ୀଙ୍କର ଦାବୀ ପ୍ରବଳ ହୋଇଛି ନିଜ ପାଖକୁ ନେଇଯିବାକୁ ।

ବୁଢ଼ୀ କହୁଛି, "ମୋ ପିଲାଏ ପରଘରେ ରହିବେ କାହିଁକି ? ମୋ ଝୁଅ ମୋ ଘରକୁ ଯିବେ । ସେଇଟା ସାଥିରେ ମୋର କିଛି ସମ୍ପର୍କ ନାହିଁ ।"

ଲୋକଙ୍କ ତାଡ଼ନାରେ ମଝିରେ ମଝିରେ ତା ଶାଶୁ ଆସି ମାଧବୀକୁ ନେଇଯାଏ କିଛିଦିନ ପାଇଁ । ବୁଦ୍ଧିମନ୍ତ ଘରକୁ ଆସିବାକୁ ବ୍ୟାକୁଳ ହୁଏନି ଗୋଟିଏ ଘଟଣା ନେଇ । ବୁଢ଼ୀ ବହୁଚେଷ୍ଟା ପରେ ମାଧବୀଠାରୁ ପୁଅର ମନକୁ ଅଲଗା କରିବାରେ ସମର୍ଥ ହୋଇ ପାରିଛି । ଏହା ତା'ର କୌଶଳ । ଗୋଟିଏ ଜାଲ୍ ଚିଠିର କରାମତି ।

ଦିନକର ଘଟଣା । ବୁଦ୍ଧିମନ୍ତ ଅଫିସରେ ବସିଛି, ହଠାତ୍ ପାଇଲା ଖଣ୍ଡିଏ ଚିଠି ତା' ମାମୁଙ୍କଠାରୁ । ସେ ଜାଣେ ତା ମା'ର ପ୍ରକୃତି ଅପେକ୍ଷା ସମ୍ପୂର୍ଣ୍ଣ ବିପରୀତ ଧରଣର ତା'ର ମାମୁଁ । ବହୁବାର ସେ ବୁଝାଇଛନ୍ତି ବୁଦ୍ଧିମନ୍ତକୁ ପାରିବାରିକ ଶାନ୍ତି ପାଇଁ । ଆଜି ଚିଠିର ବିଷୟବସ୍ତୁ ସମ୍ପୂର୍ଣ୍ଣ ଭିନ୍ନ । ସେ ଲେଖିଛନ୍ତି, "ବୁଦ୍ଧିଆ, ମୁଁ ଏ ଯାଏ ତମକୁ ଉପଦେଶ ଦେଇ ଆସିଥିଲି । ତମ ବୋଉ ଉପରେ ମଧ୍ୟ କମ ବିରକ୍ତ ହୋଇନି ତାର ବ୍ୟବହାର ପାଇଁ । ଦୁଇ ଦିନ ତଳେ ମୁଁ ତମ ଗାଁକୁ ଯାଇଥିଲି, ଦେଖିଲି ମାଧବୀ ହାତରୁ ସବୁ ଚୁଡ଼ି ବାଡେଇ ଦେଇ ପ୍ରତିବାଦ କରିଛି ତମ ବିପକ୍ଷରେ । ତମେ ଘରକୁ ଯାଉନି, ତାର ଭଲ ମନ୍ଦ କଥା କିଛି ବୁଝୁନି ତେଣୁ ଏମିତି ସ୍ୱାମୀ ଥାଇ ଯାହା ନ ଥାଇ ତାହା । ସଧବାର ସିନ୍ଦୂର ଲଗାଇ

ବିଧବା ପରି ଜୀବନ କାଟିବାର ଛଳନା ସେ କରି ପାରିବ ନାହିଁ, ତେଣୁ କାଟତକ ଲୁଚାଇ ଦେଉଛୁ । ମେ ମା ଓ ଗାଁବାଲା ଆସି ଗାଳି ଗୁଲଜ କରିବାରୁ ତା ପରଦିନ ବାଧ ହୋଇ ପୁଣି ଲଗାଇଲ; ହେଲେ ମନ୍ଦଅଭି ମୋତି ଫାଟିଗଲେ କଣ ଯୋଡ଼ିହୁଏ ? ତମ ବାପା ଗଲ୍‌ଦିନୁ ମୂରବୀ ପରି ମୁଁ ସବୁ ବୁଝୁଥିଲି ବୋଲି ମଝିରେ ମଝିରେ ତମମାନଙ୍କୁ ଶାସନ କରେ । ବର୍ତ୍ତମାନ ଆଉ ତାର ଆବଶ୍ୟକତା ନାହିଁ ।" ବୁଦ୍ଧିମନ୍ତ ସ୍ଥିର କଲା ଏହା ନିଷ୍ଠୁର ମାମୁଁଙ୍କ ଶଠି ।

ଶଠିଟି ବୁଦ୍ଧିମନ୍ତ ପଢ଼ିଲା । ତନ୍ନ ତନ୍ନ କରି ପରୀକ୍ଷା କଲା । ସେଇ-ଦିନ ସେଇ ଦୁର୍ବଳ ମୂହୂର୍ତ୍ତରେ ହେଲା ତାର ଶେଷ ନିଷ୍ପତ୍ତି । ମାଧବୀ ତାର କେହି ନୁହେଁ । ତା ପରି ଅମଙ୍ଗଳ ଶକୁନ ଗ୍ରହକୁ ଘରେ ରଖିବା ଅର୍ଥ ପୁଣି ଅମଙ୍ଗଳ ଅଶୁଭକୁ ନିମନ୍ତ୍ରଣ କରି ଆଣିବା । ପିଲାଗୁଡ଼ାକର ଭବିଷ୍ୟତ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଯିବ ତା ସମ୍ପର୍କରେ ଆସିଲେ ।

ପୁଅର ନିର୍ଦ୍ଦେଶରେ ବୁଢ଼ୀ ପିଲାମାନଙ୍କୁ ସମ୍ପୂର୍ଣ୍ଣ ଅଲଗା ରଖିଛୁ । ଚେଷ୍ଟା କରିଛୁ ସେମାନଙ୍କ ମନରେ ମାତୃ-ବିରୋଧୀ ମନୋଭାବ ସୃଷ୍ଟି କରିବ ବୋଲି । କାହାକୁ କହୁଛୁ, "ତୋ ବୋଉର ମୁଣ୍ଡ ଖରାପ, ତୁ ଜନ୍ମହେଲା-ବେଳେ ସେ ତୋ ତଣ୍ଟି ଚିପି ଦେଇଥିଲା, ମୁଁ ତା ହାତରୁ ତତେ ଛଡ଼େଇ ଆଣି ଏତେଟିରୁ ଏତେଟିଏ କରିଛୁ ।" ଆଉ କାହାକୁ କହୁଛୁ, ତୋ "ବୋଉ ତତେ ନଈରେ ଭସାଇ ଦେଇଥିଲା ତୁ ଝିଅଟାଏ ବୋଲି । ଗାଁଲୋକେ ଟାଣିଆଣି ମୋ ହାତରେ ଦେଲେ । ସେଇ ଦିନଠୁଁ ତତେ ମୁଁ ହାଡ଼େ ହାଡ଼େ ଜଗିଛୁ ।" ଆଉ କାହାକୁ କହୁଛୁ, "ବାପାରେ, ତୋତେ କୋଳରେ ଧରି ଦିନେ ତୋ ବୋଉ ଛାତ ଉପରୁ ତଳକୁ ଫୋପାଡ଼ି ଦେଇଥିଲା, ଆରେ ଭାଗବତରେ ପଢ଼ା ଅଛି—

"ଯାହାକୁ ରଖିବେ ଅନନ୍ତ
କି କରିପାରେ ବଳବନ୍ତ ।"

ଠିକ୍ ସେଇଆ ହେଲା । ଠାକୁରେ ଉଇଁଲେ । ସେଇ ଦିନଠୁ ସେ ଅଲକ୍ଷଣୀ ପାଖକୁ ତମମାନଙ୍କୁ ମୁଁ ଛାଡ଼ୁନାହିଁ । ଆଜି କେତେ ଦିନରେ ବାପା ? ବୁଢ଼ୀ ତ ମୁ ହେଲି, ଏଥରତ ଯିବି, ଆଜି କେଜେ ଜଗିବ ? ସାବଧାନ ! ତା ପାଖକୁ କେହି ଯିବନି, କଥାବାର୍ତ୍ତା କରିବନି । ତା ମୁଣ୍ଡ ତ ଖରାପ, ବାଇଆଣି ଲୋକ, କେତେବେଳେ କଣ କରିଦବ । ତଣ୍ଟି ଚପିଦବ । ଭାତରେ ବିଷ ଦେଇଦବ । ସାବଧାନ ।”

“କମଳୀ ନାନି, କାମିନୀ ନାନୀ ତମର ଜାମା କୁରୁତା, ବହିପତ୍ର ସବୁ ଯୋଗାଇବେ । ବାପା ତ ସବୁ ସୁବିଧା ଅସୁବିଧା ବୁଝିବ । ମୋ କଥା ମାନ ତନି । ରାତିରେ କେହି ତା ପାଖରେ ଶୋଇବନି କି ତା’ ସାଥିରେ ଖାଇବନି । ରାତି ଅଧରେ କେତେବେଳେ ତମମାନଙ୍କୁ ଛାଡ଼ ପକେଇବ ତମେ ଜାଣି ପାରିବନି । ଆମର ତ ଅଲଗା ରନ୍ଧା—କେତେ ଭଲ ମନ୍ଦ କରି ଖାଇବା । ସେ ତ ଗୁଡ଼ଜଳ ମୁଠେ ଫୁଟେଇ ଭୁଗ୍ଚି ଖାଉଛି, ତରକାରୀ କରୁନି । ତା ପାଖରୁ ଖାଇବ କ’ଣ ?” ପନ୍ଦରୁ ଯୋଉ କେତେଦିନ ମାଧବୀ ଶାଶୁଘରେ ରହେ ଏହିପରି ପିଲାଙ୍କ ସ୍ନେହରୁ ବଂଚିତା ହୋଇଥାଏ ।

“ଆଚ୍ଛା ମା, ବୋଉ କଣ ଆଗରୁ ଇମିତି ଥିଲା ନା ଏବେ ଇମିତି ହଉଚି ?” କେବେ କେବେ ପଶୁରେ ସାନ ପୁଅ ।

“ଏଁ, ସେଟା ପ୍ରଥମରୁ ସିମିତି । ମୁଁ ଯେତେ ମନାକଲି ତୋ ବାପକୁ, ସେ ମନା ମାନିଲାନି, ବାହା ହେଲା । ଫଳ ଭୋଗୁଚି ସେ । କା’ର କଣ ଯାଉଛି ?”

“ହେଲେ ମା—ଗାଁରେ ଲୋକେ କହୁଛନ୍ତି, ମୋ ବୋଉ ଭାରି ଭଲ ମଣିଷ, ତୁ ଖରାପ ଲୋକ, ତୋ ପାଇଁ ସେଇମିତି ହଉଚି ।”

“କଣ କହିଲୁ ଅଳପେଇସା ? ମୁଁ ଖରାପ ଲୋକ, ତୋ ବୋଉ ଭଲ ଲୋକ ? ଏଥର ତୋ ବାପା ଆସୁ ତତେ ଠିକ୍ କରିବ । ନାନୀମାନଙ୍କୁ କହିବି, ଜାମା କୁରୁତା କିଛି ଦେବେନି । ତୁ ଶୁଖି ଶୁଖି ମରିବୁ ।”

ପିଲାଟି କାନ୍ଦ କାନ୍ଦ ଭୂଇଁରେ ଲେଟିଯାଏ । ମାଧବୀ ପୋଖରୀରୁ ଆସି ପିଲାଟିକୁ କୋଳକୁ ଉଠାଇ ନେବାକୁ ଲଇଁ ପଡ଼ିଲାବେଳେ ବୁଡ଼ୀ ଚିତ୍କାର କରୁଛି ।

"ମୋ ଝୁଆକୁ ତୁ ଛୁଉଁନ ଲୋ, ଅଲକ୍ଷଣୀ ତୋ ହାତ ବାଜିଲେ ପିଲାଏ ମୋର ଜଳିଯିବେ । ତୁ ଡାହାଣୀ, ମୁଁ ତ ପିଲାଙ୍କ କଥା ବୁଝୁଛି, ତୁ ତାଙ୍କର ଅଳି ଅର୍ଦ୍ଦଟ କଣ ବୁଝିଲୁ ଯେ ସେମାନଙ୍କୁ ବାଡ଼େଇବୁ ?"

ବହୁତ ଦିନ ପରେ ବୁଦ୍ଧିମନ୍ତ ଘରକୁ ଫେରୁଛି । ମା'ର ଗର୍ଜନରେ ଅଟକି ଯାଇଛି ଦାଣ୍ଡପାଖରେ । ତା ଦେହରେ ବିଷ ଚଢ଼ିଗଲା ନିଜ ସ୍ତ୍ରୀ ବିରୁଦ୍ଧରେ । ପୂର୍ବର ମାମୁଁଙ୍କ ଚିଠି କଥା ବି ମନେପଡ଼ିଲା । ସେ ଉଲ୍‌କା ପରି ଘରେ ପଶିଯାଇ ଗୋଟାଏ ବାଡ଼ିରେ ବାଡ଼େଇଲା ମାଧବୀକୁ । ଦେହର ସମସ୍ତ ଅଳଙ୍କାର ଛଡ଼ାଇ ଆଣିଲା । ତାର ଟିକି ପୁଅଟି ଭୂଇଁରୁ ଉଠିପଡ଼ି ତା ବାପାଙ୍କ ହାତରୁ ବାଡ଼ିଟାକୁ ଧରି ପକେଇ କହିଲା, "ବାପା, ତୁମେ ବୋଉକୁ ବାଡ଼ଉଛ କାହିଁକି ? ସେ କଣ ଦୋଷ କଲା ?" ବୁଦ୍ଧିମନ୍ତ ତାର କ୍ଷୀଣ ପ୍ରତିବାଦକୁ ଖାତିରି ନ କରି ତା କଅଁଳ ପିଠିରେ ଲେଖିଦେଲା ସେଇ ବାଡ଼ିର ଦାଗ । ବୁଡ଼ୀ ତାକୁ ଘୋଷାରି ଘୋଷାରି ଘର ଭିତରକୁ ନେଇ ଯାଇ କବାଟ କିଳି ଦେଲା ।

ମାଧବୀ ଆର୍ତ୍ତ ଚିତ୍କାର କରି କହିଲା, "ମୁଁ କିଛି ଦୋଷ କରିନି, ମୁଁ ପୁଅକୁ ବାଡ଼େଇନି । ମତେ ମାରନି । ଯଦି ମାରୁଛ ପ୍ରାଣରେ ମାରିଦିଅ ।"

ତାର ପ୍ରତିବାଦ ବା ଶୁଣୁଛି କିଏ ? ଏତିକିବେଳେ ବୁଦ୍ଧିମନ୍ତ ତାକୁ ଘୋଷୋରି ଘୋଷାରି ଘରୁ ନେଇଗଲା ରାସ୍ତା ଉପରକୁ । କହିଲା, "ତୁ ଏ ଘରେ ପଶି ପାରିବୁନି, ଏ ଘରେ ତୋର କେହି ନାହାନ୍ତି ।"

"ନା...ମୁଁ ଯିବନି । ଆଦୌ ଯିବନି । ଏଇଟା ମୋ ଘର । ମଲେ ଏଇଠି ମରିବି ।"

ପୁଣି ପ୍ରହାର...ସଜ୍ଞାହୀନ ହୋଇଗଲା ମାଧବୀ । ତା' ପରର ଘଟଣା ସେ କିଛି ଜାଣେନି ।

ବର୍ତ୍ତମାନ ସେ ପରିତ୍ୟକ୍ତା । ବାପା ମା କୋଳରେ ତାର ବାକି ଜୀବନ କଟିବ । ଏଇ ହେଉଛି ସ୍ୱର୍ଗୀର ନିଷ୍ପତ୍ତି । ମାଧବୀର ମା ତାକୁ ବହୁ ଆଶ୍ୱାସନା ଦେଉଛି । କହୁଛି "ମା'ଲୋ ! ଯାହା ହେବାର ହୋଇ ଯାଇଛି । ଗଲା କଥା ପାଇଁ ଭାବି ଭାବି ଆଉ ଲାଭ କଣ ? ରାସ୍ତାରେ ଗଲାବେଳେ ଆମେ ବହୁତ ଲୋକଙ୍କ ସାଥୀ ଭେଟନ୍ତି । ଖରା ହେଲେ ସମସ୍ତେ ଗଛ ଛାଇରେ ବସି ଦୁଃଖ ସୁଖ ହୁଅନ୍ତି । ଏତିକିରେ ସମସ୍ତେ ହୁଅନ୍ତି ଆପଣାର । ପର ମୁହୂର୍ତ୍ତରେ ଯେ ଯାହା ବାଟରେ ଚାଲିଯାନ୍ତି । ସ୍ମୃତି କେବଳ ମନେ ରହେ । ତୁ ସେମିତି ଜୀବନ ପଥର ଗଛ ଛାଇରେ ଗୋଟିଏ ସୁଖର ସଂସାର ଗଢ଼ିଥିଲୁ । ଶାଶୁ, ସ୍ୱାମୀ, ପିଲା ଝିଅ—ଏ ସବୁ ଥିଲେ କିଛି ସମୟର ସାଥୀ । ସେମାନେ ତାଙ୍କ ବାଟରେ ଗଲେ, ତୁ ତୋ ଘରକୁ ଫେରିଛୁ । ବାପ ମା କୋଳକୁ ଫେରିଛୁ, ଦୁଃଖ କଣ ?"

ମାଧବୀ ଖାଲି କାନ୍ଦୁଥାଏ ଗଭୀର ଉଚ୍ଛ୍ୱାସ ଭିତରେ । କୋହରେ ତାର ସାରା ଶରୀର ଥରି ଉଠୁଥାଏ । ପାଟିରୁ କଥା ବାହାରୁ ନ ଥାଏ । ଆଖିରେ ଆଖିଏ ତରଳ କଥା । କାହାକୁ କହିବ—କହିଲେ ବି ଲାଭ କଣ ? ପୁଣି ତାର ମା କହି ଚାଲିଲା ।

"ମା'ଲୋ ! ଏ ଜୀବନଟା ଖାଲି ଦୁଃଖ...ଦୁଃ...ଖ । ଏହା ଏକ ଜଳନ୍ତା ଚୁଲି । ନାରୀର ସବୁ ସୁଖ, ସବୁ ସ୍ୱପ୍ନକୁ ଜାଳିବା ପାଇଁ ଏହା ତିଆରି ହୋଇଛି । ସବୁ ସ୍ୱାର୍ଥ, ସବୁ ସୁଖ, ଭଲମନ୍ଦ, ଆଶା ଆକାଙ୍କ୍ଷା ସବୁକୁ କୁଟା କାଠି ପରି ଏ ଚୁଲିରେ ଜାଳି, ତାର ଉତ୍ତାପରେ ପିଲା, ଝିଅ, ସ୍ୱାମୀ, ଶାଶୁ ଶ୍ୱଶୁର ଜ୍ଞାତି ପରିଜନଙ୍କୁ ଖାଦ୍ୟ ଦେବ, ତାଙ୍କୁ ବଞ୍ଚାଇବ । ସେମାନଙ୍କୁ ଆନନ୍ଦ ଦେବ । ତମକୁ କେହି କିଛି ଦେବେନି । ଦେଲେ ଦେବେ ଲାଞ୍ଛନା, ପୀଡ଼ନ, ଅସନ୍ତୋଷ ଅଭିଯୋଗ, ଅତ୍ୟାଚାର ଓ ସନ୍ଦେହ । ସତେ ଯେମିତି ସବୁ ନିୟମ ମାନିବା ପାଇଁ ତୁମେ ତିଆରି । ସବୁ ନିୟମ, ଆଚାର, ବ୍ୟବହାର ଓ ଶୃଙ୍ଖଳାକୁ ଭାଙ୍ଗିବା ପାଇଁ ସେମାନଙ୍କର ସୃଷ୍ଟି । ତମକୁ

ଜାଳି ପୋଡ଼ି ପାଉଁଶ ହେବାକୁ ପଡ଼ିବ ସେମାନଙ୍କ ପାଇଁ । ଯୋଉ ପିଲାମାନଙ୍କ ପାଇଁ ତୋ ମା ମରିଥା, ସେମାନଙ୍କ ପାଇଁ ବଞ୍ଚିବାକୁ ପଡ଼ିବ । ସେମାନେ ପଚାରନ୍ତୁ—ନ ପଚାରନ୍ତୁ, ତଥାପି ବଞ୍ଚିବାକୁ ହେବ । ଏଇତ ଏ ସଂସାରର ବିଚିତ୍ରତା । ମଣିଷର ଅବିଚାର ପାଇଁ ତୋର ଦୁର୍ଦ୍ଦିନ । ଭଗବାନଙ୍କ ଦରବାରରେ ତାର ବିଚାର ହେଲାବେଳେ ଭୁଲ ଠିକ୍ ସବୁ ବାହାରି ପଡ଼ିବ । ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ ମା !"

ମାଧବୀ ତା ବୋଉ କୋଳରେ ମୁଣ୍ଡ ଗୁଞ୍ଜି ଶୁଏ । କଇଁ କଇଁ ହୋଇ କାନ୍ଦେ । ମା'ର ଶୀତଳ କୋମଳ ଲୁହରେ ତିନ୍ତିଯାଏ । ଗ୍ରେଟ ଛୁଆପରି କୋଳକୁ ଟାଣି ନେଇ କେତେ କଣ ବୁଝାଏ ମା । ସବୁ ଦୁଃଖ ଭୁଲିଯାଏ ମାଧବୀ । ଆଃ, ମା'ର କୋଳ ସ୍ପର୍ଶ କି ସ୍ୱର୍ଗୀୟ, କି ମଧୁର ! କି ପବିତ୍ର, ସବୁ ଦୁଃଖକୁ ଦୂର କରିବାର ଶକ୍ତି ଅଛି ।

ଦୁଇବର୍ଷ ପରର ଘଟଣା ।

ତା'ର ଚିନ୍ତାରେ ଏଥି ଭିତରେ ମାଧବୀର ବୋଉ ଯାଇଛନ୍ତି, ବାପା ଯାଇଛନ୍ତି । ସେ ରହିଛି ଭାଇ ଭାଉଜଙ୍କ କୋଳରେ । ଜୀବନର ବାକି କେତୋଟା ଦିନ ଚାକିରି ଫେଟରେ ତାକୁ କଟାଇବାକୁ ହେବ । ସେମାନଙ୍କ ଭଲ-ମନ୍ଦ ସୁଖ-ଦୁଃଖରେ ଭାଗୀଦାର ହେବାକୁ ପଡ଼ିବ ।

ଆଜିକାଲି ସେ ଏକୁଲା ଶୁଏ ଗୋଟିଏ ଘରେ । ତା କୋଳର ସାଥି ହୁଅନ୍ତି ବିଲେଇ ଛୁଆ, କୁକୁର ଛୁଆ, ଛେଳି ଛୁଆ । ରାତି ଅଧଯାଏ ତା ଆଖିରେ ନିଦ ଆସେନା । ସବୁକଥା ଗୁଡ଼ାକ ତାର ମନେ ପଡ଼ି ମନ ଭିତରଟା ଘାଣ୍ଟି ଗୋଳେଇ ହୁଏ । ପିଲାଗୁଡ଼ାକ ଆଖି ଆଗରେ ନାଚି ଉଠନ୍ତି । ସାନ ପୁଅଟି ସେଦିନ କିପରି ବିନା ଦୋଷରେ ମାଡ଼ ଖାଇଲା, ବିନା ଅପରାଧରେ କିପରି ସେଦିନ ତା ଭାଗ୍ୟର ଶିର ନିଷ୍ପତ୍ତି ହୋଇଗଲା—ଏମିତି ଆଉ କେତେ କ'ଣ !

ମାଧବୀ ବହୁବାର ଚେଷ୍ଟା କରିଛି ଅଲୋଡ଼ା ପ୍ରାଣଟାକୁ ଶେଷ କରି ଦେବ ବୋଲି; କିନ୍ତୁ ତା ବୋଉର ସେଇ ପଦିକ କଥା ତାର ମନେ

ପଡ଼େ "ବଞ୍ଚିବାକୁ ହେବ । ମା'ଲୋ ! ବଞ୍ଚିବାକୁ ହେବ ତୋର ପିଲମାନଙ୍କ ପାଇଁ ।"

ତା'ର ଆଉ ପିଲ୍ କାହିଁ ? ସେ କେଉଁ ପିଲାର ମା ? ତାକୁ କେଉଁ ପିଲା ଆଉ ବୋଉ ବୋଲ ଡାକବ ? କୋଉ ପିଲା ପାଇଁ ସେ ବଞ୍ଚିବ ତେବେ ?

ନା···ତଥାପି ବଞ୍ଚିବାକୁ ହେବ । ନିଜକୁ ହତ୍ୟା କରିବାର ଅଧିକାର ତା'ର ନାହିଁ ।

ମାଧବୀ ସ୍ଥିର କରେ, ସେ ବଞ୍ଚିବ । ବଞ୍ଚିବା ପରି ନ ବଞ୍ଚିଲେ ବି ବଞ୍ଚିବା ପାଇଁ ବଞ୍ଚିବ ।

ଏଥି ଭିତରେ ତା' ମନର ସାମାନ୍ୟ ପରିବର୍ତ୍ତନ ହୋଇଛି । ଗାଁରେ ଖୋଲିଛି ଗୋଟିଏ ମହିଳା କେନ୍ଦ୍ର । ସହରରୁ କଲେଜ ଝିଅମାନେ ଦିନେ ଆସି ଏ କେନ୍ଦ୍ର ଟିକୁ ଖୋଲି ଦେଇଛନ୍ତି । ସେଦିନ ଗାଁକୁ କେତେ ଗୁଡ଼ିଏ ପଢ଼ୁଆ ଝିଅ ଓ ପୁଅ ଶିକ୍ଷକଙ୍କ ସହିତ ଆସି ତାଙ୍କ ଗାଁରେ ପହଞ୍ଚିଲେ । ସତେ ଯିମିତି ଫୁଟିଲା ଫୁଲଗୁଡ଼ିଏ । ସେମାନଙ୍କ ସ୍ନେହ ସହାନୁଭୂତି, ତାଙ୍କ ଚଳଣି ଓ ଲୋକଙ୍କ ପ୍ରତି ମଧୁର ବ୍ୟବହାର ଦେଖି ପେଟ ପୂରି ଗଲା ।

ପୁଅ ଗୁଡିକର ବେଶ ପୋଷାକ ଗାଁ ଲୋକଙ୍କ ଭିତରେ ବିଶ୍ୱାସ ସୃଷ୍ଟି କରିଥିଲା । ଝିଅ ଗୁଡିକର ପରିପାଟୀ ଗାର ଝିଅ ବୋହୂମାନଙ୍କ ଉପରେ ସୁସ୍ଥ ପ୍ରଭାବ ପକାଇଥିଲା । ସେମାନେ ଘର ଘର ବୁଲି ନିରକ୍ଷର ଝିଅ ବୋହୂମାନଙ୍କୁ ସଂଗ୍ରହ କରିଥିଲେ । ଗାଁରେ ସଭା କରି ଲୋକଙ୍କ ମନ ବଦଳାଇଥିଲେ । ଗାଁ ସ୍କୁଲର ଶିକ୍ଷୟିତ୍ରୀଙ୍କ ସାହାଯ୍ୟରେ ଖୋଲିଲେ ଗୋଟିଏ ନୈଶ ବିଦ୍ୟାଳୟ । ଝିଅମାନେ ମଝିରେ ମଝିରେ ସହରରୁ ଚାଲି ଆସନ୍ତି କେନ୍ଦ୍ର ଦେଖିବା ପାଇଁ ।

ମାଧବୀ ଏଥିରେ ଯୋଗ ଦେଇଛି । ଛଅମାସ ମଧ୍ୟରେ ସେ ଅକ୍ଷର ଲେଖି ଶିଖିଛି । ବହି ପଢ଼ି ଶିଖିଛି ଆଉ ଆଉ ମାନଙ୍କ ସାଥିରେ । ହେଲେ ତା ପରି ପଢ଼ାରେ କେହି ବେଶି ଆଗେଇ ପାରି ନାହାନ୍ତି । ବର୍ତ୍ତମାନ

ଜଞ୍ଜାଳହୀନ ଜୀବନ । ପଢ଼ିବା ପାଇଁ ତାର ଅତ୍ୟନ୍ତ ବେଶି ଆଗ୍ରହ । ଅତୀତ ଜୀବନର ସମସ୍ତ ଦୁଃଖ କଷ୍ଟକୁ ସେ ଦୁଃସ୍ୱପ୍ନ ପରି ଭୁଲି ଯାଉଛି ।

ମାଧବୀର ସାନଭାଇ ଜଣେ କଲେଜ ଅଧ୍ୟାପକ । ଭାଉଜ ମଧ୍ୟ ଉଚ୍ଚ ଶିକ୍ଷିତା । ସେ ନିଜ ସ୍ତ୍ରୀକୁ କହିଛନ୍ତି ମାଧବୀ କଥା । ଯେତେ ହେଲେ ସେ ବଡ଼ ନାନୀ ଓ ମା ସହିତ ସମାନ । ତାକୁ ଆଶ୍ରିତା ବୋଲି ନ ଭାବି ସମାଜର ଏକ କରୁଣ ଅଧ୍ୟାୟ ବୋଲି ଗ୍ରହଣ କରିବାକୁ ପଡ଼ିବ । ସେମାନେ ଶିକ୍ଷିତା ନ ହେଲେ ଏ କରୁଣ ଦୃଶ୍ୟର ଅବସାନ ଘଟିବ ନାହିଁ ।

ଭାଉଜର ସ୍ନେହ ସହାନୁଭୂତି ମଧ୍ୟରେ ମାଧବୀ ଆରମ୍ଭ କଲା ଆଉ ଏକ ଆଶାର ଅଧ୍ୟାୟ । ଏଥି ଭିତରେ ସେ ପଢ଼ିଛି । ଭାଉଜ ପ୍ରାଣ ଭରି ସାହାଯ୍ୟ କରିଛି । ପାଞ୍ଚ ବର୍ଷର କଠିନ ସାଧନା ଭିତରେ ସେ ପ୍ରସ୍ତୁତ କରିଛି ନିଜକୁ ମାଟ୍ରିକ ପରୀକ୍ଷା ପାଇଁ । ବହୁ ଆଶା ଆକାଂକ୍ଷା ମଧ୍ୟରେ ପରୀକ୍ଷା ଦେଇଛି ସେ । ଏ ହେଉଛି ତା ଜୀବନର ଅନ୍ତିମ ପରୀକ୍ଷା । ସବୁ ପରୀକ୍ଷାରେ ତ ହାରି ମାନିବାକୁ ପଡ଼ିଛି ତାକୁ । ଏ ପରୀକ୍ଷା କଣ ତାକୁ ବିଜୟିନୀ କରି ପାରିବ ?

ହଁ, ପାରିଛି ! ପାରିଛି !

ମାଧବୀ ପରୀକ୍ଷାରେ କୃତିତ୍ୱ ସହ ପାଶ କରିଛି । ତା ବଡ଼ ପୁଅଟି ମଧ୍ୟ ପାଶ୍ କରିଛି ଫାଷ୍ଟ ଡିଭିଜନ୍ ରେ । ଆଜି ମାଧବୀର ଆନନ୍ଦ ଦେଖେ କିଏ ? ଭାଉଜମାନେ ଭୋଜି ମାଗିଛନ୍ତି । ପୁତୁରା ଝିଆରୀମାନେ ଭୋଗ ଭାଗ କରି ଆନନ୍ଦରେ ବାଣ୍ଟିଛନ୍ତି ସେ ପାଶ୍ କରିଛି ବୋଲି । ଏତିକିବେଳେ ଆଖିରୁ ତାର ଝରି ପଡ଼ିଛି ଧାର ଧାର ଅଶ୍ରୁ । ସେ କ'ଣ ଆଜି ମା ନୁହେଁ ! ତା ପୁଅର ସଫଳତା ପାଇଁ ଠାକୁରଙ୍କ ପାଖରେ ଭୋଗ କରିବାର କଣ କିଛି ଅଧିକାର ତା'ର ନାହିଁ ? ସେ ନିଜ ପାଇଁ ଯେତିକି ଠାକୁରଙ୍କୁ ଡାକିନି ତାଠାରୁ ବେଶି ଡାକିଛି ନିଜର ପୁଅ ପାଇଁ—ବର୍ତ୍ତମାନ ଯାହାର ସେ ମା ନୁହେଁ । ଭାବିଛି ହାଙ୍କି ବନସ୍ତରେ ଥିଲେ ବି ରଜାଙ୍କର ।

ସାନ ଭାଉଜ ହସି ହସି ଆସି କୁଣ୍ଢେଇ ପକାଇଲେ ମାଧବୀକୁ । "ନା...ନାନୀ...! ଭୋଜି କାହିଁ ? ପାଶ୍ ତ କଲ ।"

"ଏ ସଫଳତା ସବୁ ତମର ଶୁଣି ! ତମେ ଯାହା ଦେଇଛ ଏହା ତା'ର ରୂପ । ଦେବତାଙ୍କୁ ମ କେହି କିଛି ଦେଇ ପାରେନା ସେଇଥିପାଇଁ ଶ୍ରଦ୍ଧାରେ ଫୁଲଟିଏ ଦିଏ । ତମେ ଶୁଣି ମୋର ଭାଉଜ ନୁହ । ଗତ ଜନ୍ମରେ ବୋଧହୁଏ ମୋର ମା ହୋଇଥିଲ । ଏ ଜନ୍ମରେ ମୁଁ ପୁଣି ତମର କୋଳରେ ଝିଅ ପରି ବଢ଼ିଲି । ତମେ ଅନ୍ଧକୁ ଚକ୍ଷୁଦାନ କଲ । ମୋତେ ପୁନର୍ଜନ୍ମ ଦେଇଛ । ତମକୁ କଣ ଦେଇ ପାରିବ ଆଖିର ଲୁହ ଛୋପାକ ବ୍ୟତୀତ !"

କାନ୍ଦି ପକାଇଲା ମାଧବୀ । ଭାଉଜ କୋଳକୁ ନେଇ ସାନ୍ତ୍ୱନା ଦେଲେ । କହିଲେ, "ନାମି ମୁଁ କିଛି କରିନି, ତମପାଇଁ ତମେ କରିଛ । ତମେ ଆଦର ଯତ୍ନ ଦେଇ, ପରିଶ୍ରମ କରି ଏ ବୟସରେ ଚେଷ୍ଟା କରିଛ । ଅକ୍ଷର ପାଇଁ, ତମର ଏତେ ତ୍ୟାଗ । ଅକ୍ଷର ଆଜ ତମକୁ ଆଶୀର୍ବାଦ ଦେଇଛି । ନାମି ଆସ, ଆମେ ଠାକୁରଙ୍କ ପାଖକୁ ଯିବା । ଦର୍ଶନ କରି ଆସିବା ।"

ଉଭୟେ ଚାଲି ଚାଲି ଗଲେ । ମାଧବୀ ଆଜ ଭାଉଜର ଉତ୍ସାହ ଓ ପ୍ରେରଣାର ବନ୍ୟାରେ ଭାସୁଛି । ସତେ ଯିମିତି ତା' ଜୀବନର ଅନ୍ଧାର ଉଭେଇଗଲା......ଏଥର ସେ ପାଇଛି ଆଲୋକର ଜୀବନ । ସେ ଆଜ ପରିତ୍ୟକ୍ତା ନୁହେଁ, ନିରକ୍ଷର ନୁହେଁ ।

ଠାକୁରଙ୍କ ପାଖରେ ଉଭୟେ ପ୍ରଣାମ ଢାଳିଛନ୍ତି । ମାଧବୀ କେତେ ହାରିଗୁହାରି କରିଛି ପୁଅ ପାଇଁ । ଆଜ ତାର ଆନନ୍ଦ ତା ନିଜ ପାଇଁ ନୁହେଁ । ପୁଅ ପାଇଁ...ପୁଅ ପାଇଁ । ପୁଅ ହୁଏତ ମା ବୋଲି ଅସ୍ୱୀକାର କରି ପାରେ କିନ୍ତୁ ତାର ପ୍ରତି ଶିରା ପ୍ରଶିରାରେ ତାରି ରକ୍ତ ଛୁଟିଛି । ତାର ମେଧା ଶକ୍ତି ହିଁ ତାହାରି ଦାନ । ତାର ଭଲ ପଣିଆର ସେ ଜନ୍ମଦାତ୍ରୀ । ସେ ବହୁତ ସାଙ୍ଗ ପିଲାଙ୍କଠାରୁ ଶୁଣିଛି ପୁଅ ତାର ଖାଲି ଭଲ ପଢ଼େନି, ଚମତ୍କାର ଭାଷଣ ଦିଏ । ସୁନ୍ଦର ଗପ ତିଆରି କରେ । ପ୍ରାଣସ୍ପର୍ଶୀ କବିତା ଲେଖେ । ସେ ବାଛି ବାଛି ନାଁ ଦେଇଥିଲା ବସନ୍ତ । ସମସ୍ତ ଶ୍ରୀ ଶ୍ରେଷ୍ଠ ବସନ୍ତ ।

"ଶୁଣ...!"

"କଣ କ ନାନ ?"

"ତମେ ପରା ମୋତେ ଭୋଜ ମାଗିଥିଲ, ମୁଁ ଆଜ ନଷ୍ଟସ୍ୟ ଦେବ । ତମେ ଅତ ଆଦରରେ ତାହା ଗ୍ରହଣ କରିବ ତ ?"

"ନା...ନା...ଏଇ ଭୋଗ ଗଣ୍ଡାକରେ ଭୋଜ କାମ ବଢ଼ାଇ ଦେଲେ ଚଳିବନ । ବଧିମତ ଭୋଜ । ପେଟପୂରା ଭୋଜ ।"

"ଦେବ, ପେଟପୂରା ଭୋଜ ଦେଇ ପାରିବନ ହେଲେ ମନପୂରା ଭୋଜଟିଏ ଦେବ, ବାକ ସ୍ୱାଦୁ ବା ଅସ୍ୱାଦୁ ପାଇଁ ମୁ ଦାୟୀ ନୁହେଁ । ଏ ଭୋଜଟାରେ ଅଧିକାର ଏକା ତମର ଓ ମାନସର । ଅନ୍ୟ ଭଇ ଭଉଜଙ୍କୁ ଏହା ସୁଖକର ହେବ କ ନାହିଁ ମୁଁ କହିବ ପାରୁନ ।"

"ନାନ...କହୁନ ! ଏତେ ସମସ୍ୟ କାହିଁକ ନଷ୍ଟ କରୁଛ ?"

ବସନ୍ତ ଫାଷ୍ଟ ଡ଼ିଭିଜନରେ ପାଶ୍ କରିଛି । ମୁଁ ତା ପାଇଁ ନଇତ ଠାକୁରଙ୍କ ପାଖରେ ଦୀପ ବସାଇଥିଲ । ଠାକୁରେ ଗୁହାରି ଶୁଣିଛନ୍ତ ।

"ବ...ସ...ନ୍ତ ??"

"ହଁ, ମୋ ବଡ଼ ପୁଅ ।"

"ଓଃ, ତମ ପୁଅ ବସନ୍ତ । ବାଃ, କ ଚମତ୍କାର ଖବର । ବଢ଼ିଆ ଭୋଜଟାଏ ଦେଲ ନାଣ । ବସନ୍ତ ଆମର ଫାଷ୍ଟ ଡ଼ିଭିଜନରେ ପାଶ୍ କରିଛନ୍ତ । ଭଗବାନ କରନ୍ତୁ ତାଙ୍କୁ ସୁବୁଦ୍ଧି ମିଳୁ । ସେ ମଣିଷ ହୁଅନ୍ତୁ । ହଁ...ହଁ ଆନନ୍ଦଟା ତା ହେଲେ ନଜ ପାଇଁ ନୁହେଁ—ପୁଅ ପାଇଁ । ଯାହା ହେଲେ ବ ସେ ପୁଅ । ତମେ ମା...!"

ମାଧବଙ୍କ ମନରେ ଆଶାର [illegible] ।
[illegible]

ଘରକୁ ଫେରିଛନ୍ତି ଅଧ୍ୟାପକ ମାନସ ମୋହନ । ନାନାଙ୍କୁ ଅଭିନନ୍ଦନ ଜଣାଇଛନ୍ତି ସଫଳତା ପାଇଁ । ଶୁଣୀନାକୁ ସାଧୁବାଦ ଜଣାଇଛନ୍ତି ତାଁରି ପ୍ରଗାଢ଼ ଯତ୍ନ ପାଇଁ । ସମସ୍ତଙ୍କର ଉତ୍ସାହ ଓ ଆନନ୍ଦକୁ ଦ୍ୱିଗୁଣିତ କରି ସେ ଗୋଟିଏ କୌତୂହଳପୂର୍ଣ୍ଣ ଆନନ୍ଦମୟ ସମ୍ବାଦ ପରିବେଷଣ କରିଛନ୍ତି । "ମାଧବୀଙ୍କୁ ନିଯୁକ୍ତି ମିଳିଛି ପୁରୀର ଗୋଟିଏ ଶିଶୁ ବିଦ୍ୟାଳୟରେ । ତାର ନାମ "ଶିଶୁ ବିହାର" । ସେ ଶିକ୍ଷୟିତ୍ରୀ ଭାବରେ ଯୋଗ ଦେବ ଅଗଷ୍ଟ ପନ୍ଦର ତାରିଖରେ ।"

ଆନନ୍ଦ କଳରୋଳରେ ଘର ଉଚ୍ଛୁଳି ଉଠିଲା । କି ଉନ୍ମାଦନା··· କି ଉଲ୍ଲାସ ! ହସ ରସର ସୁଅରେ ସମସ୍ତେ ଭାସିଯାଇଛନ୍ତି । ସମସ୍ତଙ୍କ କଣ୍ଠ ଭାଷାଭରା କିନ୍ତୁ ଭାଷାହୀନ । ସମସ୍ତଙ୍କ ନୟନ ଆଶା ଭରା କିନ୍ତୁ ଅଶ୍ରୁପୂର୍ଣ୍ଣ ।

ତା'ର ଭିତରେ ଆଉ ଗୋଟିଏ ଆନନ୍ଦର ଖବର ହେଲା ମାନସ ବାବୁଙ୍କର ପୁରୀ କଲେଜକୁ ବଦଳି ହୋଇଛି ଓ ରାତି ପାହିଲେ ସେ ଶୁଣୀ, ପିଲାମାନେ ଓ ନାନୀ ସମସ୍ତେ କାଲି ପୁରୀ ଅଭିମୁଖରେ ଯାତ୍ରା କରିବେ ।

ଆଜିର ଦିନ ସବୁଠାରୁ ଆନନ୍ଦମୟ ।

ସାରା ପରିବାର ଅତୀତର ସମସ୍ତ ଶୋକ ଭୁଲି ଯାଇଛନ୍ତି । ମଉଜ ମଜଲିସ୍ ଭିତରେ ଦିନଟି କଟି ଯାଇଛି । ଦେଖାଯାଇଛି ପରିବାର ଭିତରେ ଏକମାତ୍ର ଜଣଙ୍କର ମୁଖରେ ସେ ଉଦ୍ଦାମତା ନାହିଁ । ସେ ଉଲ୍ଲାସ ନାହିଁ । ସେ ହେଉଛନ୍ତି ସେମାନଙ୍କର ବଡ଼ଭାଇ । ମାନସବାବୁ ଭାଇଙ୍କୁ ପ୍ରଣାମ ବାଢ଼ିଲେ ।

"ଭାଇ, ଦେହ କ'ଣ ଭଲ ନାହିଁ ?"

"ହଁ, ଭଲ ଅଛି ।"

"ତେବେ ଏତେ ଶୁଖିଲା ଦେଖାଯାଉଛ କାହିଁକି ? ନାନୀର ଗୃକର ହେଲା ସେ ପାଶ କଲା······!"

"ହଁ, ସେଇଥିପାଇଁ ।"

'ଏଁ...କ...ଅ...ଣ କହୁଛ ? ସେଥିପାଇଁ ?"

"ହଁ, ସେଇଥିପାଇଁ । ସବୁ ଶୁଣିଲିଣି । ସମସ୍ତେ ହସିଲା ବେଳକୁ ମୁଁ କାନ୍ଦୁଛି । ଭାବୁଛି ଏ ସୌଭାଗ୍ୟ ପାଇଁ ଭଗବାନ ହତଭାଗିମାକୁ ଭୋଗ କରିବାକୁ ଭାଗ୍ୟ ଦେଇଛନ୍ତି ତ ? ସବୁ ଛଡ଼େଇ ନେଲା ପରି ପୁଣି ଏଥିକୁ ବି ଛଡ଼େଇ ନେବେ ନି ତ ?"

ମାନସଙ୍କ ଆଖିପତା ଓଦା ହୋଇ ଆସିଲା । ଗଭୀର ନିଶ୍ୱାସଟିଏ ମାରି କହିଲେ, "ବିଧିର କି ବିଚିତ୍ର ବିଧାନ, କିଏ କହିବ ?"

ରାତି ହେଲା । ଖାଇ ପିଇ ସମସ୍ତେ ଶୋଇଲେ । ମାଧବୀର ଆଜି ପ୍ରବଳ ସ୍ନେହ ବଳେଇ, କୁକୁର ଓ ଛେଳି ଛୁଆ ଉପରେ । ସବୁ ଗୁଡ଼ିକୁ ଏକ ସଙ୍ଗରେ କୋଳକୁ ଆଣି କାନେ କାନେ କହିଲା, "ରେ...ଟୁନୁ, ମୁନୁ... ଟୁକନ୍ । ଖବର ଶୁଣିଲଣିଟି । ବସନ୍ତ ଭାଇ ଫାଷ୍ଟ ଡ଼ିଭିଜନରେ ପାଶ୍ କରିଛି ।" ବଲେଇ ଛୁଆଟି ମ୍ୟାଉଁ ମ୍ୟାଉଁ କରି କଣ କହିଲା କେଜାଣି ମାଧବୀ ବୁଝିଲା । ତା ମୁଣ୍ଡକୁ ଆଉଁସି ଦେଲା । କୁକୁର ଛୁଆଟା ଗାଉଁ ଗାଉଁ ହେଉଥାଏ । ବଡ଼ କଳୁହା ସେଇଟା ଏ ତିନିଙ୍କ ଭିତରେ । ତାକୁ ଗେଲରେ ଥାପୁଡ଼େଇ କହିଲା, ତୁ ଟା ବଡ଼ ଦୁଷ୍ଟ । ସବୁଥିରେ ତୋର ବାଦ । ତୁ ବଡ଼ ହେଲେ ତୋତେ ଭାଇ ପାଖକୁ ପଠେଇ ଦେବି । ସେ ପାଶ୍ କରିଛି । କଲେଜରେ ପଢ଼ିବ । ଲେକ୍‌ଚରର ହେବ, ତୁ ତା ପାଖେ ପାଖେ ରହିବୁ ।" ତାକୁ ଆଉଁସିଦେଲା ଛେଳି ଛୁଆଟିକୁ ବୁକୁରେ ଆଉଜେଇ ନେଇ ତା ଲମ୍ବା କାନରେ ଥୋଇ ଦେଲା ଗୋଟିଏ ଉଷ୍ମ ଚୁମ୍ବନ କହିଲା, "ହଇଲୋ ଫୁଲେଇ ! ଶୁଣିଲୁଣି ନା, ଭାଇ ପରୀକ୍ଷାରେ ପାଶ୍ କରିଛି । ତୋ ପିଲା ଝିଲାଙ୍କୁ ପାଠ ପଢ଼େଇବୁ । ପାଠ ପଢ଼ି ସିଆଣିଆ ହେଲେ ମଣିଷଙ୍କ ମାଡ଼ ଆଉ ସହିବାକୁ ପଡ଼ିବନି ।"

ଆଜି ସବୁ ଗୁଡ଼ିକର ସ୍ଥାନ ତା ନିଜ କୋଳରେ । ତଳେ ନୁହେଁ । କେତେ ଆନନ୍ଦ, କେତେ ଆଶା, କେତେ କଳ୍ପନା କେବଳ ସେଇମାନଙ୍କୁ ମାପିଲେ ।

ରାତି ହେଲା । ସପନ ଦେଖିଲା ମାଧବୀ । ତାକୁ ତାର ସ୍ୱାମୀ ଘରୁ ତଡ଼ି ଦେଇଛନ୍ତି ମାଡ଼ ଦେଇ । ସେ କାନ୍ଦି କାନ୍ଦି ଯାଇ କୂଅକୁ ଡ଼େଇଁ ପଡ଼ୁଛି । ନିଦ ବାଜିଲାରେ ଚିତ୍କାର କରି ଉଠିଛି ସେ । ତା ସହିତ ଯୋଗ ଦେଇଛନ୍ତି ତା ଛୁଆମାନେ । ବିଲେଇ, କୁକୁର ଛେଳିଛୁଆ । ଏକା ସହିତ ସମସ୍ତଙ୍କର ଚିତ୍କାର ।

ନିଦ ଭାଙ୍ଗିଗଲା । ଦେଖିଲା ସେ ଗୁଡ଼ାକ ଶେଯ ଉପରେ ଚିତ୍କାର କରୁଛନ୍ତି । ତା ସାରା ଶରୀର ଭୟରେ ଥରୁଛି । ସେ କିଛି ସମୟ ପରେ ପ୍ରକୃତିସ୍ଥ ହେଲା । ଛୁଆ ଗୁଡ଼ାକ ବି ତୁନି ହୋଇ ଚଳେ ଶୋଇଲେଣି । ସେ ପୁଣି ଶୋଇଲା ।

କିଛି ସମୟ ପରେ ପୁଣି ଆଖିରେ ଛୁଟିଲା ସ୍ୱପ୍ନ । ସେ ଦେଖିଲା ସ୍କୁଲରେ ଯୋଗ ଦେଇଛି । ମାସକୁ ଦରମା ପାଉଛି ଅଢ଼େଇଶହ ଟଙ୍କା । ତା' ଶାଶୁ ମରି ଯାଇଛନ୍ତି । ସ୍ୱାମୀ ସ୍କୁଲରୁ ବାହାରି ଯାଇଛନ୍ତି । ସରକାରୀ ଗୁଣ୍ଡ ଦୁଧ, ଗହମ ଓ ଶିଶୁ ଖାଦ୍ୟ ଚୋରି କରି ବିକି କଲେ ବୋଲି । ତାଙ୍କରି ହାତରେ ଷ୍ଟୋର ଥିଲା ସେ ସବୁ ଜିନିଷର । ନିଜ ପେଟକୁ ଖାଇବାକୁ ପାଇ ନାହାନ୍ତି । ପିଲାମାନଙ୍କୁ ଚଳେଇ ପାରି ନାହାନ୍ତି । ନଣନ୍ଦମାନେ ନିଜ ଚେଷ୍ଟାରେ ବିବାହ କଲେଣି । ଆର୍ଥିକ ସାହାଯ୍ୟ କିଛି ସେ ଆଉ ମିଳୁନି । ବଡ଼ ପିଲାଟି କଲେଜରେ ନାମ ଲେଖାଇ ବୃତ୍ତି ପାଇ ପଢୁଛି, ହେଲେ ବାପାଙ୍କଠାରୁ ସାହାଯ୍ୟ ପାଇ ପାରୁନି ।

ମାଧବୀକୁ ବାହାର କରିଦେବା ପରେ ତା ପାଇଁ ଶୁଦ୍ଧି ହୋଇଛି । ସେଇଦିନଠୁ ମାଧବୀର ଖବର କିଛି ରଖି ନାହାନ୍ତି ବୁଦ୍ଧିମନ୍ତ ।

ହଠାତ୍ ମାଧବୀ ସ୍ୱପ୍ନରେ ଦେଖିଲା ଜଣେ ଜୀର୍ଣ୍ଣ ଶୀର୍ଣ୍ଣ ଦାଢ଼ିଆ ଲୋକ ସାଙ୍ଗରେ ଦୁଇଟି ପୁଅ ଓ ଦୁଇଟି ଝିଅ ନେଇ ଆସି ପହଞ୍ଚିଛି ତାଙ୍କ ଆଶ୍ରମରେ । ପ୍ରଧାନ ଶିକ୍ଷୟିତ୍ରୀ ଖବର ଦେଇଛନ୍ତି, ମାଧବୀ ପାଖକୁ ଏ ପିଲା ଗୁଡ଼ିକର ନାମ ଲେଖି ଆଶ୍ରମରେ ରଖିବାକୁ ଓ ତାଙ୍କର ସମସ୍ତ ଖର୍ଚ୍ଚ ଛାଡ଼ କରିବାକୁ ।

ମାଧବୀ ଆସିଛି । ସେମାନଙ୍କର ନାମ ଲେଖାଇଛି । କପାଳରେ କୁଞ୍ଚିତ ରେଖା । ନୟନରେ ପ୍ରଶ୍ନବାଚୀ ?

"ହିଁ...ପିଲାଙ୍କ ନା କଣ ?"

"ଶରତ କୁମାର ତ୍ରିପାଠୀ, ଶିଶିର କୁମାର ତ୍ରିପାଠୀ ।"

ଚମକିତ ମନରେ ଲେଖିଲା ମାଧବୀ ।

"ଘର ?"

"ବୀର ନରସିଂହପୁର ଶାସନ ।"

"ଏଁ...ବୀର ନରସିଂହପୁର ?"

"ନାମ ? ହିଁ, ଆପଣଙ୍କର ନାମ ?"

"ବୁଦ୍ଧିମନ୍ତ ତ୍ରିପାଠୀ ।"

ଗୋଟାଏ ବିକଟାଳ ଚିତ୍କାର କଲା ମାଧବୀ । ଚଟ୍ କରି ନିଦ ଭାଙ୍ଗିଗଲା । ପୁଣି ତାର କୋଳ ସାଥି ଗୁଡ଼ିକ ଚିତ୍କାର କରି ଉଠିଲେ । ତା' ଦେହ ପୂର୍ବ ଅପେକ୍ଷା ଆହୁରି ବେଶି ଥରୁଚି । ସତେ ଯିମିତି ପଡ଼ିଯିବ । ସତେ ଯିମିତି ଆକାଶ ଭାଜି ପଡ଼ୁଛି ତା ଉପରେ । ଅଧ ଘଣ୍ଟାଏ ପରେ ସେ ଟିକିଏ ପ୍ରକୃତିସ୍ଥ ହେଲା । ତା ପରଠୁ ଆଉ ନିଦ ହୋଇନି ମାଧବୀର । ସ୍ୱପ୍ନର ଘଟଣା ଗୁଡ଼ାକ ମନେ ପଡ଼ୁଛି ଥରକୁଥର ।

*    *    *

ଆଜି ଅଗଷ୍ଟ ପନ୍ଦର ।

ମାଧବୀର ସବୁଠାରୁ ବଡ଼ ଏକ ସ୍ମରଣୀୟ ଦିବସ । ନିରକ୍ଷରୀ ମାଧବୀ...ପଣ୍ଡିତାଣୀ । ମାଧବୀର ଆଜି ଏକ ବିରାଟ ପରିବର୍ତ୍ତନ । ସେ ଆଜି ଶିକ୍ଷିତା ।

ସମାଜ ତାଙ୍କୁ ଆଜି ସ୍ୱୀକୃତି ଦେଇଛି । ନିଜର କେତୋଟି ସନ୍ତାନ ବଦଳରେ ତାଙ୍କୁ ଆଜି ମିଳିଛି ମା' ପଣିଆ । ସେ ତା ନୂଆ କାମରେ ଯୋଗ ଦେଇଛି । ବଗିଚର ଅସୁମାର କଢ଼ିଙ୍କୁ ଫୁଟାଇବାର ଭାର ତା' ଉପରେ । ଏଥି ଭିତରୁ ଅଧିକାଂଶ ହତଭାଗ୍ୟ, ନିରାଶ୍ରୟ । ସେମାନଙ୍କୁ ମାତୃତ୍ୱ ଦେଇ, ଶିକ୍ଷା ଦେଇ, ସ୍ନେହ ସହାନୁଭୂତି ଦେଇ ଫୁଟାଇବ । ତାଙ୍କ ମହକରେ ନିଜେ ଆମୋଦିତ ହେବ ଆଉ ସାରା ସମାଜକୁ ହସାଇବ । ପ୍ରଥମ ଦିନର ଅନୁଭୂତି ନେଇ ସ୍କୁଲରୁ ଫେରୁଛି ମାଧବୀ ।

"କହ ନାନି···କେମିତି ଲାଗୁଛି ? ତୁ ଆଜି ସତରେ ଗୋଟାଏ ପୁନର୍ଜନ୍ମ ପାଇଲୁ ।"

"ହଁରେ ବାପା, ମୋତେ ଆଜି ଚକ୍ଷୁଦାନ ମିଳିଲା । ତୁ ତ ନିଶ୍ଚୟ ମୋର ସନ୍ତୋଷ ଓ ଆଶୀର୍ବାଦର ପାତ୍ର, ହେଲେ ଭାଉଜଠାରେ ମୁଁ ଚିରଦିନ ଋଣୀ । ଏ ଜନ୍ମରେ ତ ଶୁଝି ପାରିବନି ।"

"ଆଚ୍ଛା ଥାଉ, ଏ ଜନ୍ମରେ ନ ଶୁଝିଲେ ଆରଜନ୍ମରେ ଶୁଝିବୁ । ସେଥିପାଇଁ ତୁ ହେବୁ ଶୁଣୀର ମା ଓ ସେ ହେବ ତୋର ଝିଅ ।"

"ତୋତେ କଣ କଥାରେ ପାରିବ ମାନ ? ହେଲେ ପଛକଥା ମନେ ପଡୁଛି । ତୋର ବିବାହ ପ୍ରସ୍ତାବ ପଡ଼ିବାବେଳେ ମୁଁ ମନା କରିଥିଲି ପ୍ରଥମେ । ଏଡ଼େ ବଡ଼ ପାଠୋଇ ବୋହୂ ଆମ ଘରେ କ'ଣ ଚଳି ପାରିବ ? ଆମକୁ ଖାତିର କରିବ ନାହିଁ । ଜଗନ୍ନାଥ ବୋଧହୁଏ ତାକୁ ପଠେଇଥିଲେ ମୋତେ ତାକୁ ଉଦ୍ଧାର କରିବ ବୋଲି । ଆଜି ବୁଝିଲି ପାଠର ମର୍ଯ୍ୟାଦା କଣ ।"

"କଓ ଶୁଣୀ, କଣ ନାନୀଠାରୁ ଆଜି ବହୁତ ସାର୍ଟିଫିକେଟ୍ ପାଇଲଣି । ଏଥର ଯାଅ, ଗାଁ ଗହଳରେ ବୁଲି କିଛି କାମ କର । ତମେମାନେ ଲାଗିଲେ କେତେ ସ୍ତ୍ରୀମାନଙ୍କର ଭାଗ୍ୟ ବଦଳିଯିବ । ଆଚ୍ଛା ନାନି, ତୁ ଯା ମନ୍ଦିରଆଡ଼ୁ ଟିକିଏ ବୁଲି ଆସିବୁ । ଶୁଣୀ ଦେହ ତ ଭଲନାହିଁ । ଟିକିନ୍‌କୁ ସାଥିରେ ନେଇଯା । ଏଇ, ନେ ଦଶଟଙ୍କା । ଭୋଗ କରି ଦୁଃଖୀ ଭିକାରୀଙ୍କୁ ବାଣ୍ଟି ଦେବୁ ।"

"ଆରେ ଟିକନ୍ !"

"ବାପା, କଣ କ ?"

"ଆରେ, ନାମାକୁ ସନ୍ଧ୍ୟାରେ ମନ୍ଦର ଆଡ଼େ ବୁଲେଇ ଆଣିବୁ ।"

"ହଁ, ଯିବ ଯେ..."

"ପୁଣି "ଯେ" କଣ ? ଯିବୁ ତ ।"

"ଟିଡ୍‌ସନ୍ ସାର୍ ଆସି ଫେରିଯିବେ । କାହିଁକି ବର୍ତ୍ତମାନ ଗଲେ ହବନି ?"

"ଆଚ୍ଛା ଯା...ନାମାକୁ ନେଇ ସବୁ ଠାକୁରଙ୍କୁ ଦେଖାଇ ଦେବୁ ।

ବୁଝିଲୁ ?"

"ହଁ...ବାପା !"

ମାଧବୀ ଓ ଟିକନ୍ ବାହାରିଲେ ମନ୍ଦରକୁ । ମନ୍ଦର ବେଢ଼ାରେ ପ୍ରବେଶ କଲାକ୍ଷଣି ଦେଖିଲେ ଗୋଟିଏ ବ୍ରହ୍ମଚାରୀ ଯଜ୍ଞ ବେଦୀରେ ଠିଆ ହୋଇ ଉଚ୍ଚାରଣ କରୁଛି,

"ଭବନ୍ତ ଭିକ୍ଷାଂ ଦେହି
ଭବନ୍ ଭିକ୍ଷାଂ ଦେହି ।"

ପ୍ରାୟ ମୁହଁ ସଞ୍ଜବେଳ ।

ଯାତ୍ରୀ ଗହଳରେ ମନ୍ଦର ଭରପୁର । ପଣ୍ଡାମାନେ ଗୋଟିଏ ଗୋଟିଏ ଯାତ୍ରୀ ଦଳ ନେଇ ସବୁଆଡ଼େ ବୁଲାଉଛନ୍ତି । କେଉଁଠାରେ ଭକ୍ତର ଚନ୍ଦନ୍ତ-ଭରା ସ୍ତୁତି ମନ୍ଦର ଉଚ୍ଛୁଳାଇ ଦେଉଛି ତ ଆଉ କେଉଁଠାରେ ଯାତ୍ରୀଙ୍କ ସହିତ ପଣ୍ଡାର ଯୁକ୍ତିତର୍କ ଚାଲିଛି ଦକ୍ଷିଣା ପାଇଁ ।

ମାଧବୀ ମୁଣ୍ଡରେ ଓଢ଼ଣା ଟାଣି ଦେଇ ସେଇଆଡ଼େ ଚାହିଁଲା । ଆଖିରେ ପଲକ ପଡ଼ୁନି । ସତେ ଯିମିତି ଠାକୁରଙ୍କୁ ଦର୍ଶନ କରିବା କଥା

ସେ ଭୁଲିଗଲାଣି । ତା'ର ମନ ତା'ର ଭିତରୁ ସତେ ଯେପରି କଣ ହଜିବା ଜିନିଷକୁ ଖୋଜିଲା ପରି ଘୂରି ବୁଲୁଛି । ସେ ଅଳ୍ପ ଦୂରରେ ଛିଡ଼ା ହୋଇଛି ଗୋଟିଏ ଖମ୍ବର ଆଢୁଆଳରେ ।

ନାନା···ଅଟକି ଗଲୁ କ'ଣ ମ ? ମନ୍ଦିର ଭିତରକୁ ଯିବାନି ?"

"ହଁ ରେ ବାପା ଯିବା ଯେ, ଦେଖିଲୁ ବେଦୀରେ ବ୍ରହ୍ମଘ୍ୱସଟି କି ସୁନ୍ଦର ଦିଶୁଛି । ଆଚ୍ଛା ଟିକିଏ ତୋର ମତ କଣ ? ଆମେ ଠାକୁରଙ୍କୁ ସିମିତ ଦର୍ଶନ କରନ୍ତେ ଆଉ ଏଇ ଯେଉଁ ଟଙ୍କା ଆଣିଛେ ତାହା ବ୍ରହ୍ମଘ୍ୱରର ଭିକ୍ଷା ଥାଳରେ ବ୍ରତ ଭିକ୍ଷା ଦିଅନ୍ତେ ।"

"ଭାରି ବଢ଼ିଆ କଥା ନାନ ! ଗରିବ ବ୍ରାହ୍ମଣ ପିଲା, ପଇସା ପତ୍ର ପାଇଲେ କିଛି ନ ହେଲେ ଜାମାପଟା ବହିପତ୍ର ହ'ଗଣ୍ଡିତ କିଣନ୍ତା । ଆଚ୍ଛା ଆ !"

"ପ୍ରଥମେ ଦର୍ଶନ କରି ସାରି ଫେରିଲାବେଳକୁ ବ୍ରତ ଭିକ୍ଷା ଦେଇ ସେଇ ପାଖେ ଯିବା । ହଁ···ତୋ ପକେଟରେ କାଗଜ କଲମ ଅଛି କି ?"

"ହଁ, ଅଛି । କଣ କରିବ ?"

"ଦେଲୁ ବାପା ! ମୁଁ ଆଶୀର୍ବାଦ ଶ୍ଳୋକଟିଏ ଜାଣିଛି, ଲେଖିଦେଇ ସେଇ କାଗଜ ଖଣ୍ଡ ଟଙ୍କା ସହିତ ଦେବା ।"

"ବାଃ···ଚମତ୍କାର ଭାବନା । ଆଚ୍ଛା, ନିଅ କାଗଜ କଲମ ଏଇ ସେଇ କାନ୍ଥ ପାଖକୁ ଯାଇ ଲେଖ । ମୁଁ ମୋର ସାଙ୍ଗ ସହିତ ଟିକିଏ କଥାବାର୍ତ୍ତା ହେଉଛି ।"

ମାଧବୀ ତା'ଠାରୁ କାଗଜ କଲମ ଆଣି ଲେଖିଲା, "ବାପା ଧନ ! ଜୀବନରେ ଆଜି ତୋର ଏଇ ଦିନଟି ସବୁଠାରୁ ବଳି ପୁଣ୍ୟଦିନ । ଆଜି ତୁ ଏ ଯଜ୍ଞ ବେଦୀରେ ପ୍ରତିଜ୍ଞା କରୁଛୁ ଜୀବନକୁ କର୍ମମୟ କରିବୁ ବୋଲି । ମନେରଖ ବାପା, ପୁରୁଷର ସୌନ୍ଦର୍ଯ୍ୟ ଫୁଟେ ପ୍ରତିଜ୍ଞାରେ । ଜୀବନରେ ନୀତି, ନିୟମ, ଧର୍ମ, କର୍ମ, ଶୃଙ୍ଖଳା ମାନି କାମ କରିବା ପାଇଁ

ଆଜିର ପ୍ରତିଜ୍ଞା । ଆଜିଠାରୁ ତୁ ବିବେକକୁ ତୋ ଜୀବନର ଧ୍ରୁବତାରା ରୂପେ ଗ୍ରହଣ କରିବୁ ।

ତୋର ଜନ୍ମ ଦିନରେ ତୋ ବାପା ଗୋଟିଏ ମୁଦି ମୋତେ ଉପହାର ଦେଇଥିଲେ । ଯେଉଁ ଦିନ ମାଡ଼ ମାରି ଅଳଙ୍କାର ଛଣ୍ଡାଇ ନେଇ ମୋତେ ଘରୁ ବାହାର କରି ଦେଲେ, ସେଦିନ ତାଙ୍କର ଦୃଷ୍ଟି ଏ ମୁଦିଟିରେ ବୋଧହୁଏ ପଡ଼ି ପାରି ନ ଥିଲା । ସେଇ ମୁଦିଟି ଥିଲା ତାଙ୍କର ସ୍ମୃତି ତୋରି ପାଇଁ । ମୁଁ ତ ବାପା ସର୍ବହରା । ମୋର ନିଜର ହୋଇ କ'ଣ ଅଛି ଯେ ତୋତେ ଦେବି ? ସେଇ ସ୍ମୃତି ଭରା ମୁଦି ଓ ଠାକୁରଙ୍କ ଛଡ଼ା ଫୁଲଟିଏ ଏହା ସହିତ ଦେଉଛି । ମୋର ଆଶୀର୍ବାଦ, ତୋର ସଂସାର ସୁଖମୟ ହେଉ । ତୁ ପୁନିଅର ଚନ୍ଦ୍ର ପରି ଭାଗ୍ୟ ଆକାଶରେ ହସି ଉଠିଲା ବେଳେ—ଅନ୍ଧାରର ମଣିଷ ମୁଁ, ଅନ୍ଧକାର ଭିତରେ ରହି ତୋର ହସ ଜୋଛନା ଟିକିଏ ପାଏ । ଈଶ୍ୱରଙ୍କଠାରେ ଏତିକ ମାତ୍ର ଗୁହାରି ।

। ଇତି ।
ତୋର ଅଭାଗିନୀ ମା"

ଲେଖି ସାରିଲା ମାଧବୀ ।

ଗୁରୁଆଡ଼କୁ ଚାହିଁ ହାତରୁ ମୁଦିଟିକୁ କାଢ଼ିଲା । ଯନ୍ତ୍ରର ସହିତ ଚିଠି ଭିତରେ ତାକୁ ରଖି କାଗଜ ଖଣ୍ଡିକ ଭାଙ୍ଗିଲା । ତା ଭିତରେ ସେହି ଦଶଟଙ୍କିଆ ନୋଟ୍‌ଟି ଓ ଦର୍ଶନ କରିସାରି ଠାକୁରଙ୍କ ଫୁଲଟିଏ ସବୁକୁ ନେଇ ବ୍ରତବେଦୀ ପାଖରେ ପହଞ୍ଚିଲା ମାଧବୀ । ଗୁପ୍ତାଭିଜା ଆଲେକ । ଓଢ଼ଣୀ ଭିତରେ ତା ମୁହଁଟି ଲୁଚିଛି । ଅଧା ଲୁଚି...ଅଧା ଦେଖା । ଆଖିରେ ଆଖିଏ ଲୁହ । ବ୍ରହ୍ମଚାରୀଙ୍କଠାରୁ ବ୍ରତ ଭିକ୍ଷା ପାଇଁ ଶ୍ଳୋକ ଛୁଟିଛି ।

ଯାତ୍ରୀମାନଙ୍କ ମଧ୍ୟରୁ କେତେକ ବ୍ରହ୍ମଚାରୀର ଭିକ୍ଷା ଥାଳରେ ବ୍ରତ ଭିକ୍ଷା ଦେଇଯାଉଛନ୍ତି । ପାଖରେ ବସିଛନ୍ତି ଜଣେ ଶୀର୍ଣ୍ଣକାୟ ଜରାଗ୍ରସ୍ତ ନାରୀ । ନୟନର ଜ୍ୟୋତି ଲିଭିଯାଇଛି । ଚକ୍ଷୁହୀନା । କାଶର ପ୍ରକୋପରେ ଏତେ ଅସ୍ଥିର ଯେ ସତେ ଯେପରି ମୃତ୍ୟୁ ଶ୍ରେୟସ୍କର । ନିକଟରେ ବସିଛନ୍ତି ଜଣେ ବ୍ରାହ୍ମଣ । ବୃଦ୍ଧପ୍ରାୟ । ଚମ ସବୁ ଓହଳି ଗଲାଣି । ମୁଖମଣ୍ଡଳରେ କୁଞ୍ଚିତ

କୁଟୀଳ ରେଖା । ଗମ୍ଭୀର ଗୃହାଣୀ । ଶୁଭ୍ର ରେଖା ବିପର୍ଯ୍ୟସ୍ତ । ଚକ୍ଷୁକୋଟର ଗତ । ବୋଧହୁଏ ଗୋଡ଼ରେ ଲୁକ୍କାୟିତ ବ୍ୟାଧିର ଚିହ୍ନ । କନା ଗୁଡ଼ା ଯାଇଛି ତା ଉପରେ । ପ୍ରତ୍ୟେକ ଯାତ୍ରୀଙ୍କ ଆଡ଼କୁ ଚାହିଁଛନ୍ତି କରୁଣାର କଟାକ୍ଷ ପାଇଁ ।

ଜଣେ ଯାତ୍ରୀ ପଚାରିଲେ,

“ଗୋସାଇଁ, ପିଲାର ମା କାହିଁ ?”

“ନା···ହିଁ···।” କହିଲା ସେଇ ଅନ୍ଧୁଣୀ ଜରାଗ୍ରସ୍ତ ସ୍ତ୍ରୀଟି ।

“ନାହିଁ ? ପିଲାଟି ତେବେ ମାତୃହରା ?”

“ହଁ ବାପ । ତାର ମା’ ଚାଲି ଯାଇଛି ।”

ବୃଦ୍ଧ ନିରୁତ୍ତର ।

ଠିକ୍ ଏତିକବେଳେ ମାଧବୀ ଲୁପ୍ତାଭିଜା ଆଲୋକ ମଧ୍ୟରେ ବେଣୀ ଆଡ଼କୁ ମୁହାଁଇ ଆସି ଟଙ୍କା ମୁଦ୍ର ଓ ଚେରିର ପୁଡ଼ିଆଟି ବ୍ରହ୍ମଚାରୀର ଥାଳରେ ଭୂତ ଭିକ୍ଷା ଦେଇ ଫେରି ଆସିଲା ।

ବ୍ରାହ୍ମଣ ସ୍ତ୍ରୀ ଲୋକଟିର ଦାନରେ ବିହ୍ୱଳ ହୋଇ କହିଲେ, “ଭଗବାନ ତୁମର ମଙ୍ଗଳ କରିବେ ମା ! ତୁମ ପିଲାଙ୍କର ଭବିଷ୍ୟତ ମଙ୍ଗଳମୟ ହେବ । ଗରିବ ବ୍ରାହ୍ମଣ ଓ ବ୍ରହ୍ମଚାରୀ ପ୍ରତି ଦୟା ବିଫଳ ହେବ ନି ।”

ମାଧବୀ ଓ ଟିକନ୍ ମିଶିଗଲେଣି ବଡ଼ ଦାଣ୍ଡର ଜନସମୁଦ୍ର ମଧ୍ୟରେ । ତଥାପି ବ୍ରହ୍ମଚାରୀଙ୍କଠାରୁ ଭିକ୍ଷା ଶ୍ଳୋକ ଝରୁଥାଏ ।

---